# ପୃଥିବୀର ଲୋକକଥା

## ଇହୁଦୀ ଲୋକକଥା

[ ଦ୍ୱିତୀୟ ଭାଗ ]

*ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍.ସି., ଏଲ୍.ଏଲ୍.ବି.*

*ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍.ଏ., ବି.ଇଡ଼ି.*

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA
**Ihudi Lokakatha**
**Dwitiya Bhaga**

# ପୃଥିବୀର ଲୋକକଥା
ଇହୁଦୀ ଲୋକକଥା

ଦ୍ୱିତୀୟ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ପୋ : ଦିଘାଳ, ଜିଲ୍ଲା : ପୁରୀ

ଦ୍ୱିତୀୟ ସଂସ୍କରଣ : ସ୍ନାନ ପୂର୍ଣ୍ଣିମା - ୨୦୦୯

ମୁଦ୍ରଣ : ସୁରେଖା ପ୍ରିଣ୍ଟର୍ସ,
ଅଲିଶା ବଜାର

ମୂଲ୍ୟ : ଟ ୧୫.୦୦

# ନିବେଦନ

ମଣିଷ ଆଜି ଶାନ୍ତି ଆଉ ସୁଖରେ ନାହିଁ । ନିଜେ ଭଲ ହେଲେ ବି ସେ ନିରାପଦ ନୁହଁ । ବିନାକାରଣରେ ସେ ଆଜି ଆକ୍ରମିତ । ସେଥିରୁ ତାର ନିସ୍ତାର ନାହିଁ । ଯେଉଁମାନେ ଆକ୍ରମଣ କରୁଛନ୍ତି, ସେମାନେ ତାର ନିଜ ଲୋକ । ତା ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ସେମାନଙ୍କର ସିନା ଦୟା ଆଉ ମମତା ରହିବାର କଥା, ତାହା ରହୁନାହିଁ, କିନ୍ତୁ ଯେ ଆକ୍ରମିତ । ସେ ତାର ବିବେକ ତାଡ଼ନାରେ ସେମାନଙ୍କ ପ୍ରତି ନିର୍ଦ୍ଦୟ ହୋଇ ପାରୁନାହିଁ । ତଥାପି ଯେ ଏହି ସମସ୍ୟାର ସମାଧାନ ହେବ, ସେ ଆଶା ବି କ୍ଷୀଣ ନୁହେଁ, ସତ୍ୟ ।

ଏଇ ସମସ୍ୟାର ସମାଧାନ ପାଇଁ ବହୁ କାଳଜୟୀ ମହାପୁରୁଷମାନେ ବହୁ ନୀତିକଥା କହିଛନ୍ତି । ପ୍ରତିଟି ନୀତିକଥା ଜୀବନ ପରିଚାଳନାର ମାର୍ଗ । ସେ ସବୁ ଅନୁସରଣ କଲେ ମଣିଷ ବଦଳିବ । ଏ ଏକ ଆଶା । ଭଗବାନ ଅର୍ଜ୍ଜୁନଙ୍କୁ କହିଛନ୍ତି । ତାହାହିଁ ଆମ ଗପ । ସେଥିପାଇଁ ଏଇ ଗପଗୁଡ଼ିକୁ ପ୍ରକାଶ କରାଯାଉଛି ।

ସେଇ ମନିଷୀମାନଙ୍କ ଭିତରୁ ଫ୍ରେଡ଼ସ ଅନ୍ୟତମ । ସେ ଜଣେ କ୍ରୀତଦାସ । ଅଗଷ୍ଟସ୍ ରୋମର ଖ୍ରୀ:ପୂ: ୨୭ରେ ସମ୍ରାଟ ଥିଲେ । ଫ୍ରେଡ଼ସ୍‌ଙ୍କୁ ତାଙ୍କର ଗୃହକର୍ମରେ ନିୟୋଜିତ କରାଯାଇଥିଲା । ଫ୍ରେଡ଼ସ୍‌ଙ୍କ ନୀତିକଥା ସମ୍ରାଟ ଅଗଷ୍ଟସ୍‌ଙ୍କୁ ଉଦ୍‌ବୋଧିତ କରିଥିଲା । ତେଣୁ ପୁରସ୍କାର ସ୍ୱରୂପ ସମ୍ରାଟ ତାଙ୍କୁ ମୁକ୍ତ କରିଥିଲେ ।

ଫ୍ରେଡ଼ସ୍ ଏସପ୍‌ଙ୍କ କାହାଣୀକୁ ଲାଟିନରେ ପଦ୍ୟ ଆକାରରେ ରଚନା କରିଥିଲେ । ତା ଛଡ଼ା ସେ ବହୁ ନୀତିକଥାର ସ୍ରଷ୍ଟା । ସେ ସବୁ ପୁସ୍ତକରେ ଲିପିବଦ୍ଧ । ତା' ଛଡ଼ା ତାଙ୍କ ରଚିତ ବହୁ ଗଳ୍ପ ଲୋକଙ୍କ ତୁଣ୍ଡରେ ଏବେ ବି ପ୍ରଚଳିତ । ସେଥିରୁ ପଚିଶିଟି କଥା ଏଇ ପୁସ୍ତକରେ ସନ୍ନିବେଶ କରାଯାଇଛି ।

ଆମ ଲୋକ ଆଜି ନୀତିଭ୍ରଷ୍ଟ । ଗପ ମାଧ୍ୟମରେ ଆମେ ସେମାନଙ୍କୁ ନୀତିକଥା ଶିଖାଇବାକୁ ଉଦ୍ୟମୀ । ପୃଥିବୀର ସାଧୁସନ୍ଥମାନେ ନୀତିକଥା ଗପ ଆକାରରେ ପ୍ରକାଶ କରିଥାନ୍ତି ଓ ସେସବୁ ହେଲା ଲୋକକଥା । ସେସବୁ ସଂଗ୍ରହ କରାଯାଇଛି । ସେଥିରୁ ଆମେ ଏପର୍ଯ୍ୟନ୍ତ ୧୩୪ଟି ପୁସ୍ତକ ପ୍ରକାଶ କରିସାରିଲୁଣି, ଏହା ଲୋକେ ପଢ଼ିଲେ ବଦଳି ଯିବେ । ଏଥିରେ ଆମର ବିଶ୍ୱାସ ରହିଛି । ସେଥିପାଇଁ ପୃଥିବୀର ଲୋକକଥା ପ୍ରକାଶ କରିବାକୁ ଆମେ ଉଦ୍ୟମୀ । ଲୋକଙ୍କ ମଙ୍ଗଳ ପାଇଁ ଏହି ଉଦ୍ୟମ ସଫଳ ହେବା ଦରକାର ।

ଏଥିପାଇଁ ଆପଣଙ୍କର ସଦିଚ୍ଛା, ସହାନୁଭୂତି ଓ ଶ୍ରଦ୍ଧା ପାଇଁ ଏଇ ନିବେଦନ ।

**ଲକ୍ଷ୍ମୀଧର ମହାନ୍ତି**

# ସୂଚୀପତ୍ର

# ଈଶ୍ୱରଙ୍କ ଇଚ୍ଛା

ସେବ୍ରେସୀନ ପୋଲାଣ୍ଡର ଗୋଟିଏ ଗାଁ । ପାଖକୁ ଲାଗି ତାର ଗୋଟିଏ ଜଙ୍ଗଲ । ସେଇ ଜଙ୍ଗଲରେ ହସିଦ ତା ସ୍ତ୍ରୀ ସହିତ ରହୁଥିଲା । ସେମାନେ ଇହୁଦୀ । ଶନିବାର ସେମାନଙ୍କର ବିଶ୍ରାମ ଦିବସ । ସେଦିନ ହସିଦ ସେବ୍ରେସିନକୁ ଯାଏ । ସେଠି ଇହୁଦିମାନଙ୍କର ପ୍ରାର୍ଥନା ମନ୍ଦିର ସାଇନୋଗଗ୍‌ରେ ସେ ପ୍ରାର୍ଥନା କରେ । ଧର୍ମ ପୁସ୍ତକ ପଢ଼େ । ସପ୍ତାହର ଅନ୍ୟ ଦିନମାନଙ୍କରେ ସେ କଣ କରେ ସେ କଥା କେହି ଜାଣନ୍ତି ନାହିଁ । କିନ୍ତୁ ସମସ୍ତେ କେବଳ ଏତିକି ଜାଣନ୍ତି ଯେ ସେମାନଙ୍କର ଦୁଇଟି ଛେଳି ଅଛି । ହସିଦ ସ୍ତ୍ରୀ ଛେଳି ଦୁଇଟାକୁ ପାଖ ପଡ଼ିଆରେ ସକାଳେ ବାନ୍ଧିଦିଏ । ସଂଧ୍ୟା ବେଳକୁ ଘରକୁ ଆଣେ । ଛେଳି ଦି'ଟା ଅଳ୍ପ ଅଳ୍ପ ଦୁଧ ଦିଅନ୍ତି । ସେଇ ଦୁଧ, ସେଥିରୁ ବାହାରୁ ଥିବା ଲହୁଣି ଓ ଛେନା ବିକି ସେଥିରୁ କିଛି ପଇସା ସେମାନେ ରୋଜଗାର କରନ୍ତି । ତାହା ଏତେ ଅଳ୍ପ ଯେ ନାହିଁ କହିଲେ ବି ଅତ୍ୟୁକ୍ତି ହେବ ନାହିଁ ।

ସବୁ ଦିନପରି ସେଦିନ ବି ହସିଦର ସ୍ତ୍ରୀ ଛେଳିକୁ ଦୁହିଁବାକୁ ଗଲାବେଳକୁ ଦେଖିଲା ଯେ ଛେଳି ଦୁଇଟା ତାଙ୍କ ଜାଗାରେ ନାହାନ୍ତି । ହସିଦ ଓ ତାର ସ୍ତ୍ରୀ ଜଙ୍ଗଲ ଯାକ ଖୋଜିଲେ । କୌଣସିଠାରେ ଛେଳି ଦି'ଟାଙ୍କର ଟେର ପାଇଲେ ନାହିଁ । ସେଦିନ ସକାଳେ ସେ ଛେଳିଦିଟାକୁ ପଡ଼ିଆରେ ବାନ୍ଧିବାକୁ ଭୁଲି ଯାଇଥିଲେ । ସେତିକିବେଳେ ହସିଦ ସ୍ତ୍ରୀର ଏ କଥା ମନେପଡ଼ିଲା । ଏଇଟା ତାର ତ୍ରୁଟି । ଦୋଷ । ସେଥିପାଇଁ ସେ ବହୁତ କାନ୍ଦିଲା । ଏହା ଦେଖି ହସିଦ୍ ଟିକିଏ ମୁରୁକି ମୁରୁକି ହସିଲା । ତାପରେ ତାର ସ୍ତ୍ରୀକୁ କାନ୍ଦଣା ବନ୍ଦ କରିବାକୁ ଯାଇ କହିଲା – "ଏହା ଈଶ୍ୱରଙ୍କର ଇଚ୍ଛା । ଏଥିରେ ବ୍ୟସ୍ତ ହେବାର କିଛି ନାହିଁ ।" ସ୍ୱାମୀ ମୁହଁରେ ହସ ଦେଖି ସ୍ତ୍ରୀଟି ସ୍ୱାମୀ ମୁହଁକୁ ଅନାଇ ରହିଲା । ଏହା ଭିତରେ କିଛି ସମୟ ଚାଲିଗଲା । ଶେଷକୁ ସ୍ତ୍ରୀଟି ଭାବିଲା – 'ଏହା ଭିତରେ କିଛି ଗୁଢ଼ ରହସ୍ୟ ରହିଛି ।' ତାର ମନେପଡ଼ିଲା – ଏଇ ଛେଳି ଦି'ଟାକୁ କିଣି ପାଳିବାକୁ ହସିଦ ବହୁତ ଉଚ୍ଛନ୍ନ ହେଉଥିଲା । ସେତେବେଳେ ସେ ତାର ଏତେ ଆଗ୍ରହ କାହିଁକି ବୋଲି ଜାଣିବାକୁ ଚାହିଁଥିଲା । ସ୍ୱାମୀ ତାର ଉତ୍ତର ଦେଇଥିଲା – "ଏହା ଈଶ୍ୱରଙ୍କର ଇଚ୍ଛା ।"

ଦିନଯାକ ସ୍ୱାମୀ ସ୍ତ୍ରୀ ଜଙ୍ଗଲ ଯାକ ଖୋଜିଲେ । ଖୋଜି ଖୋଜି ଶେଷକୁ ନିରାଶ ହେଲେ । ଛେଳି ଦୁଇଟା ମିଳିବାର ଆଶା କିଛି ନଥିବାରୁ ସେମାନେ ଘରକୁ ଫେରିଲେ । ସଂଧ୍ୟା ହେଲା । ଆଶ୍ଚର୍ଯ୍ୟ, ଛେଳି ଦୁଇଟି ସେତେବେଳକୁ ଆପେ ଆପେ ଆସିଲେ । ସେଦିନ ସେମାନେ ପ୍ରଚୁର ଦୁଧ ଦେଲେ । ଆଗରୁ ସେମାନେ କେବେହେଲେ ଏତେ ଦୁଧ ଦେଇ ନଥିଲେ । 'ଏହା ଈଶ୍ୱରଙ୍କ ଇଚ୍ଛା" ହସିଦ୍ ଓ ତାର ସ୍ତ୍ରୀ ଧରିନେଲେ । ପରଦିନ ଠାରୁ ସକାଳେ ହସିଦ୍‌ର ସ୍ତ୍ରୀ ଛେଳିକୁ ବାନ୍ଧିଲା ନାହିଁ ।

ଦିନ ଭିତରେ ଛେଳିକୁ ହସିଦ୍ କିମ୍ବା ତା ସ୍ତ୍ରୀ ଥରୁଟିଏ ବି ଦେଖନ୍ତି ନାହିଁ । କିନ୍ତୁ ସଂଧ୍ୟା ବେଳକୁ ଛେଳି ଦି'ଟା ଆପେ ଆପେ ଆସନ୍ତି । ପ୍ରଚୁର ଦୁଧ ଦିଅନ୍ତି । ହସିଦ ତାର ସ୍ତ୍ରୀ ଗାଁରେ ସେ ଦୁଦ ବିକନ୍ତି । କିନ୍ତୁ ଆଶ୍ଚର୍ଯ୍ୟ ଯେ ଏଇ ଦୁଧ ଅନ୍ୟଦୁଧଠାରୁ ସଂପୂର୍ଣ୍ଣ ଭିନ୍ନ । ତଫାତ । ଏହା ସ୍ୱାସ୍ଥ୍ୟହୀନ ଲୋକଙ୍କୁ ସ୍ୱାସ୍ଥ୍ୟବାନ କରେ । ରୋଗୀକୁ ରୋଗମୁକ୍ତ କରେ । ଅଳ୍ପଦିନ ଭିତରେ ସେବ୍ରେସିନ ଗାଁରେ ରୋଗୀଟିଏ ଦେଖିବାକୁ ଆଉ ମିଳିଲା ନାହିଁ ।

ଏହା ଭିତରେ ଛ ଦିନ ଚାଲିଗଲା । ଯାହା ସବୁ ଘଟି ଯାଇଛି, ସେଥିରେ ହସିଦ ବିବ୍ରତ । ବିସ୍ମୟ । କଥାଟା କ'ଣ ଜାଣିବାକୁ ତାର ପ୍ରବଳ ଆଗ୍ରହ । ସପ୍ତମ ଦିନ ସେ ଲୁଚି ଲୁଚି ଛେଳିଙ୍କର ପିଛା ଧରିଲା । ସେମାନେ ଗୋଟିଏ ଜାଗାକୁ ଆସିଲେ । ଯେଉଁଠି ଗଛ ପରେ ଗଛ । ଗଛ ପାଖରେ ଗଛ । ଗଛ ସବୁ ଏତେ ଲଗାଲଗି ଯେ ଯିବାକୁ ବାଟ ଜମା ନାହିଁ । ତଥାପି ଛେଳି ଦୁଇଟା ତା ଭିତରେ ଗଳି ଗଳି ପଳାଇଲେ । ହସିଦ ସେଠି ଅଟକିଗଲା ନାହିଁ । ତାଙ୍କ ପଛେ ପଛେ ସେଇମିତି ସେ ଗଲା । ଅସୁବିଧା ତାର ହେଲା ନାହିଁ । ତାଙ୍କ ପଛେ ପଛେ ଯାଇ ସେ ଗୋଟିଏ ଖୋଲା ପଡ଼ିଆରେ ପହଞ୍ଚିଲା । ଛେଳିମାନେ ଆଗେ ଆଗେ । ହସିଦ ତାଙ୍କ ପଛେ ପଛେ । ହଠାତ୍ ହସିଦ୍ ଦେଖିଲା – ସେ ଗୋଟିଏ ଗୁମ୍ଫାର ଭିତରେ ଯାଉଛି । ସେଇ ଗୁମ୍ଫାର ଭିତରେ ବହୁଦୂରରେ ଏକ କ୍ଷୀଣ ଆଲୁଅ ଦେଖାଯାଉଛି । ସେଇ ଆଲୁଅ ଆଡ଼କୁ ଛେଳିମାନେ ଯାଉଥାନ୍ତି । ହସିଦ ତାଙ୍କ ପଛେ ପଛେ ଗଲା ।

କିଛି ବାଟ ଗଲା ପରେ ସେ ଦେଖିଲା – ରାସ୍ତା କରରେ କଳା କଳା ଭୂତ । ତାଙ୍କର ଜିଭ ଲାଲ୍ ଟକ୍ ଟକ୍ । ଜିଭକୁ ଦେଖାଇ ସେମାନେ ଡ଼େଉଁଥାନ୍ତି ।

ଚିତ୍କାର କରୁଥାନ୍ତି । କି କର୍କଶ ସେ ସ୍ୱର । ଆକାଶ ସେ ଶବ୍ଦରେ କଂପି ଯାଉଥାଏ । ଚାରିପଟୁ ପତର ପଡୁଥାଏ । ପଛରେ ସୁନା ରୁପାର ଝଣଝଣ ଶବ୍ଦ ୀ ଦି ପଟେ ତା'ର ସୁନ୍ଦର ଉଲଗ୍ନ ସ୍ତ୍ରୀ ଲୋକ । କିଂତୁ ହସିଦ ନିର୍ବିକାର । ସେ ବାଁ ପଟକୁ କି ଡ଼ାହାଣ ପଟକୁ ଚାହିଁଲା ନାହିଁ । ତା' ପଥରେ ସେ ଚାଲିଥାଏ । ତାର ସଂପୂର୍ଣ୍ଣ ବିଶ୍ୱାସ ଈଶ୍ୱରଙ୍କ ଉପରେ । ଟିକିଏ ବି ହଲଚଲ ତା ମନକୁ ସେ କରୁନଥାଏ । ସବୁ ମୁହୂର୍ତ୍ତରେ ସବୁ ସମୟରେ ସେ ଈଶ୍ୱରଙ୍କ ନାମ ସ୍ମରଣ କରୁଥାଏ । ହଠାତ୍ ସେ ଦେଖିଲା - ତାକୁ ବିଭ୍ରମ କରୁଥିବା ଶକ୍ତିସବୁ ଆସ୍ତେ ଆସ୍ତେ ଅପସରି ଗଲେ । ଏହା ଭିତରେ ହସିଦ ଗୁମ୍ଫାର ଦୁଆର ମୁହଁରେ ପହଞ୍ଚି ଯାଇଥିଲା । ପଦାକୁ ବାହାରି ସେ ନୀଳ ଆକାଶକୁ ଦେଖିଲା । ସେଠି ଗୋଟିଏ ଛୋଟ ପିଲା ଠିଆ ହୋଇଥିଲା । ସେ ଛେଳିମାନଙ୍କୁ ଶିଶିର ମାରୁଥିଲା । ହସିଦକୁ ଦେଖି ପିଲାଟି ତା ପାଖକୁ ଆସିଲା । ହୀବୃ ଭାଷାରେ ପଚାରିଲା - "ତୁମେ ଏ ଅଂଚଳକୁ ନୂଆ ହୋଇ ଆସିଛ ?"

ପବିତ୍ର ଇଜ୍ରାଇଲରେ ହସିଦ୍ ଯେ ପହଞ୍ଚିଯାଇଛି, ତାହା ସେ ହୃଦୟଙ୍ଗମ କଲା । ଫଳରେ ମନରେ ତାର ଅହେତୁକ ଭୟ । ସେ ଥକ୍କା ମାରି ସେଠି ଠିଆହୋଇ ରହିଲା । ପିଲାଟି କହି ଚାଲିଥାଏ - "ମୁଁ ସପେଦର ପରି ବେଷ୍ଟନୀର ନୂଆ । ଏ ପର୍ଯ୍ୟନ୍ତ ମୁଁ ଛେଳିମାନଙ୍କୁ ଜେରୁଜେଲମ ପାଖ ପବିତ୍ର ଜୁଡ଼ିଆନ୍ ପାହାଡ଼କୁ ଚରାଇବାକୁ ନେଉଥିଲି ।"

ହସିଦ ଏଥର ତଳେ ଲମ୍ବ ହୋଇ ପଡ଼ିଗଲା । ସେ ଈଶ୍ୱରଙ୍କୁ ଧନ୍ୟବାଦ ଜଣାଇ ସେଠାରେ ମାଟିକୁ ସେ ବାରମ୍ବାର ଚୁମ୍ବନ କଲା । ତାପରେ ସେଠି ବସି ସେବ୍ରେସିନର ଥିବା ସମସ୍ତ ଇହୁଦିମାନଙ୍କୁ ଚିଠିଟିଏ ଲେଖିଲା । ସେଥିରେ ସେ ସେମାନଙ୍କୁ ଜେରୁଜେଲମ ଆସିବା ପାଇଁ ଆହ୍ୱାନ ଜଣାଇଲା । ଗୁମ୍ଫା ଭିତରେ ଦେଖିଥିବା ଜିନିଷ ପ୍ରତି ଭୟଭୀତ ନ ହେବା ପାଇଁ ସତର୍କ କରିଦେଲା । ଏ ଚିଠିକୁ ଗୋଟିଏ ଡ଼ିମ୍ବିର ପତ୍ରରେ ବାନ୍ଧି ତାକୁ ଗୋଟିଏ ଛେଳି ବେକରେ ବାନ୍ଧି ଦେଲା । ସେବ୍ରେସିନର ରାବ୍‌ବି ଏ ଚିଠି ପାଇବେ ବୋଲି ଡ଼ିମ୍ବିରି ପତ୍ରରେ ଉପରେ ଲେଖିଲା ।

ସବୁଦିନ ପରି ସଂଧ୍ୟାକୁ ଛେଳିମାନେ ଘରକୁ ଫେରିଲେ । ବହୁତ ଦୁଧ ବି ଦେଲେ । ହସିଦ ସ୍ତ୍ରୀ ସ୍ୱାମୀକୁ ନ ଦେଖି ଭାରି ଦୁଃଖ କଲା । ସେ

ଦୁଃଖରେ ଏପରି ବିବ୍ରତ ହୋଇ ପଡ଼ିଲା ଯେ ଛେଳି ବେକରେ ବଂଧା ହୋଇଥିବା ଚିଠିକୁ ଦେଖି ପାରିଲା ନାହିଁ । ସ୍ତ୍ରୀ ଲୋକଟି ଦିନେ, ଦୁଇଦିନ, ତିନିଦିନ ଅପେକ୍ଷା କଲା । ତଥାପି ସ୍ୱାମୀ ତାର ଫେରିଲା ନାହିଁ । ଡ଼କାଏତମାନେ ସ୍ୱାମୀକୁ ତାର ମାରି ଦେଇଛନ୍ତି ବୋଲି ତାର ବିଶ୍ୱାସ ହେଲା । ସେ କାହିଁକି ଏକୁଟିଆ ଜଙ୍ଗଲରେ ରହିବ, ନିଜକୁ ନିଜେ ବାରମ୍ବାର ପଚାରିଲା । ସେବ୍ରେସିନ୍ ଯାଇ ଇହୁଦୀମାନଙ୍କ ସହିତ ରହିବ ବୋଲି ଶେଷକୁ ସେ ସ୍ଥିର କଲା । ତାପରେ ସେ ଭାବିଲା – ସେବ୍ରେସିନ ଗଲେ, ଛେଳି ଦୁଇଟା ନେଇ କଣ ସେ କରିବ ? ସେମାନେ ତା' ପାଇଁ ଗୋଟିଏ ସମସ୍ୟା ହୋଇଯିବେ ବରଂ ଛେଳି ଦୁଇଟାକୁ ମାରି ତାଙ୍କ ମାଂସ ବିକି ଦେବାଟା, ତା' ପକ୍ଷେ ଉଚିତ ହେବ । ଯାହା ଭାବିଲା ସେଇଆ ସେ କଲା ।

ଛେଳିମାନଙ୍କୁ ମାରିବାପରେ ତାର ଘାତକ ଡ଼ିମ୍ବିର ପତ୍ରରେ ବଂଧା ହୋଇଥିବା ଚିଠିକୁ ଦେଖିଲା । ସେ ସିଧା ଧାଇଁ ଯାଇ ରାବ୍‌ବିଙ୍କୁ ଏ ଚିଠିକୁ ଦେଲା । ଚିଠି ପଢ଼ି ରାବ୍‌ବିଙ୍କ ମନ ବ୍ୟାକୁଳ । ସେ ଗଭୀର ଦୁଃଖରେ ମ୍ରିୟମାଣ । କାନ୍ଦି ପକାଇଲେ । ସେ ଭାବିଲେ – "ଛେଳିମାନେ ପବିତ୍ର ଇଜ୍‌ରାଇଲ ଯିବାର ବାଟ ଚାଣିଥିଲେ । ସେମାନେ ମୃତ । ତାଙ୍କୁ ବଂଚାଇ ହେବ ନାହିଁ । ଏଥର କ'ଣ କରାଯିବ ? ଆଉ ବାଟ କ'ଣ ?"

ସେମାନଙ୍କର ଅପକର୍ମ ପାଇଁ ଚିଠିଟି ଠିକ୍ ସମୟରେ ବୋଧ ହୁଏ ପଢ଼ାଯାଇ ପାରିଲା ନାହି । ସେଥିପାଇଁ ସେମାନେ ପବିତ୍ର ଭୂମୀରେ ପହଞ୍ଚି ପାରିଲେ ନାହିଁ । ସେମାନଙ୍କୁ ଏଥର ମୁକ୍ତିପାଇଁ ଅପେକ୍ଷା କରିବାକୁ ହେବ । ସେଥିପାଇଁ ଇହୁଦୀମାନେ ତିନିଦିନ ଧରି ନଖାଇ ନପିଇ ପ୍ରାର୍ଥନା କରିବେ । ଏହା ଥିଲା ରାବ୍‌ବିଙ୍କର ନିଷ୍ପତ୍ତି । ସେଇଆ ହିଁ କରାଗଲା । ଏ ଚିଠିଟିକୁ ରାବ୍‌ବି ବହୁତ ଦିନ ଧରି ସାଇନୋଗଗ୍‌ରେ ସାଇତି ରଖିଥିଲେ । ଯେତେବେଳେ ଭୟଙ୍କର ନିଆଁ ଲାଗିଲା ଏବଂ ସେବ୍ରେସିନ୍‌ର ଅଧିକାଂଶ ଘର ଭସ୍ମୀଭୀତ ହୋଇ ପାଉଁଶ ହୋଇଗଲା, ସେତିକିବେଳେ ପବିତ୍ର ଭୂମୀର ଆସିଥିବା ଚିଠିଟି ବି ହଜିଗଲା ।

□□□

# ଧାତ୍ରୀର ପୁରସ୍କାର

ଖୁର୍ଦ୍ଦିସ୍ଥାନରେ ଜୋକୁ ଗୋଟିଏ କ୍ଷୁଦ୍ର ସହର । ସେଠି ଜଣେ ଧାଈ ଥିଲେ । ପ୍ରସବ କରାଇବାରେ ତାଙ୍କର ଆନନ୍ଦ । ସେଥିପାଇଁ ସେ ପାରିଶ୍ରମିକ ଖୋଜନ୍ତି ନାହିଁ । ଯେ ଯାହା ଦେଲା, ସେଥିରେ ସେ ଖୁସି । ତାଙ୍କର ଧାରଣା - ପରର ଉପକାର କଲେ, ମୃତ୍ୟୁପରେ ନର୍କରେ ଆଉ ଘାଣ୍ଟି ହେବାକୁ ପଡ଼ିବ ନାହିଁ । ସିଧା ସ୍ୱର୍ଗକୁ ଚାଲିଯିବ ।

ଯେତେବେଳେ କଥା କୁହାଯାଉଛି, ସେତେବେଳେ ଡ଼ାକ୍ତର କି ପାଠ ପଢୁଆ ଧାଈମାନେ ଜୋକୁ ସହରରେ ନଥିଲେ । ପ୍ରସବ ପାଇଁ କେବଳ ଏଇ ଧାଈ ହେଉଛନ୍ତି ସମସ୍ତଙ୍କର ଆଶା ଓ ଭରସା । ସାରା ସହରର ଲୋକେ ପ୍ରସବ ପାଇଁ ଧାଈ ଉପରେ ନିର୍ଭର କରୁଥିଲେ । ସେ ବି କାହାକୁ କେବେ ମନା କରୁ ନଥିଲେ । ସେଥିପାଇଁ ବେଳେ ବେଳେ ଧାଈକୁ ନିଶ୍ୱାସ ମାରିବାକୁ ବେଳ ନଥିଲା ।

ଦିନେ ଧାଈଟି ବହୁ ପ୍ରସବ କରାଇ କ୍ଳାନ୍ତ ଓ ଅବସନ୍ନ ଭାବରେ ଘରକୁ ଫେରିଥିଲେ । ଟିକିଏ ଆରାମ କରିବା ପାଇଁ ତାଙ୍କ ବାରଣ୍ଡାରେ ଆରାମ ଚୌକିରେ ଲମ୍ବି ଯାଇଥିଲେ । ଏତିକି ବେଳେ ତାଙ୍କର ନଜର ଗୋଟିଏ ସୁନ୍ଦର ଶଙ୍ଖି ବରାଡ଼ି ଉପରେ ପଡ଼ିଲା । ସେ ଲୁଚି ଲୁଚି ତାଙ୍କ ଘର ଭିତରକୁ ଯାଉଥାଏ । ଏମିତି କି ତାର ଯିବା଼ର ଶବ୍ଦ ଟିକିଏ ବି ହେଉ ନଥାଏ । ସେ ଘରେ ପଶି ଘରର ଚାରିକଣକୁ ଆଗ ଶୁଙ୍ଘି ପକାଇଲା । ଚେହେରାରୁ ଜଣାଯାଉଥାଏ ଯେ ବିରାଡ଼ିଟି ଗର୍ଭବତୀ । ତା'ର ଏ ସମୟରେ ଯେତିକି ଖାଦ୍ୟ ଦରକାର କଥା ସେ ପାଉନାହିଁ । ତେଣୁ ଲୁଚି ଲୁଚି ଅନ୍ୟ ଘରେ ପଶି ଚୋରି କରି ଖାଇବାକୁ ସେ ଆସିଛି । ବିରାଡ଼ି ପ୍ରତି ତାଙ୍କର ଦୟା ହେଲା । ସେ ତାଙ୍କର ବସିବା ଜାଗାରୁ ଉଠି ଘରକୁ ଗଲେ । ବିରାଡ଼ିଟିକୁ କିଛି ଖାଇବାକୁ ଦେଲେ । ସେତେବେଳେ ହଠାତ୍ ତାଙ୍କ ମନକୁ ଆସିଲା - ବିରାଡ଼ିର ପ୍ରସବ ବେଳେ ତା'ର ଧାଈ କାମ କରିବେ ।

ଏହା ଭିତରେ କିଛିଦିନ ଚାଲି ଗଲାଣି । ସେଦିନ ରାତି ଟି ଅନ୍ୟ ରାତିଠାରୁ ଭିନ୍ନ । ଚାରିଆଡ଼େ ଘନ ଅଂଧାର । ମୁହଁକୁ ମୁହଁ ଦିଶୁନାହିଁ । ତା ସାଙ୍ଗକୁ ଝଡ଼ ପିଟୁଛି । ସାଇଁ ସାଇଁ ହୋଇ ପବନ ବୋହୁଛି । ସେ ଶବ୍ଦରେ କାନ

ଅତଡ଼ା ପଡୁଥାଏ । ଠିକ୍ ଏତିକିବେଳେ ଧାଈର ଦ୍ୱାର ମୁହଁରେ ଠକ୍ ଠକ୍ ଶବ୍ଦ ହେଲା । ଧାଈ ନିଦରେ ଶୋଇଥିଲେ । ନିଦ ତାଙ୍କର ଭାଙ୍ଗିଗଲା । ସେ ପୋଷାକ ପତ୍ର ପିନ୍ଧିସାରି କବାଟ ଖୋଲିଲେ । ଦେଖିଲେ - ଜଣେ ଲୋକ ଓଳିତଳେ ଠିଆ ହୋଇଛି । ତାର ଚେହେରାରୁ ଜଣାଯାଉଥାଏ ଯେ ସେ କ୍ଳାନ୍ତ । ଅବସନ୍ନ । ସେ ଲୋକଟି କହିଲା - "ମା, ମୋ ସ୍ତ୍ରୀର ଗର୍ଭବେଦନା ଆରମ୍ଭ ହୋଇଗଲାଣି । ପାଖରେ ତା'ର କେହି ନାହିଁ । ଆପଣ ଟିକିଏ ଦୟାକରି ଶୀଘ୍ର ବାହାରି ପଡ଼ନ୍ତୁ । ଆପଣଙ୍କ ପରିଶ୍ରମ ପାଇଁ ମୁଁ ବହୁତ ପଇସା ଦେବି ।"

କାହାକୁ କେବେ ଅସମୟରେ ମନା କରିବା ଧାଈଙ୍କର ପ୍ରକୃତିର ବାହାରେ । ତା ଛଡ଼ା ଏଇମିତି ସମୟରେ ହଠାତ୍ ବେଳେବେଳେ ଡ଼ାକରା ଆସେ । ସେ ତ ତାକୁ ଈଶ୍ୱରଙ୍କର ଆଦେଶ ବୋଲି ଭାବନ୍ତି । ଏଥର ପ୍ରଥମ ଥର ପାଇଁ ମନା କରିବାର ପ୍ରଶ୍ନ କାହିଁକି ଉଠୁଛି ? ସେ ଘରେ ପଶି ପୋଷାକ ପତ୍ର ପିନ୍ଧି ନେଲେ । ତାପରେ ପଦାକୁ ବାହାରି ପଡ଼ିଲେ । ଲୋକଟି ଆଗେ ଆଗେ । ସେ ତାର ପଛେ ପଛେ ।

ସେମାନେ ଧାଈର ରହିବା ଗଳିରୁ ବାହରି ମୁଖ୍ୟ ରାସ୍ତାକୁ ଆସିଲେ । ହଠାତ୍ ଧାଈଙ୍କର ମନରେ ଆସିଲା - ଜଣେ ଲୋକ ସାଥିରେ ସେ ଚାଲିଛନ୍ତି । ଅଥଚ ତାଙ୍କର ପାଦ ଶବ୍ଦ ତାଙ୍କ କାନରେ ପଡୁନାହିଁ । ଜୋକୁ ତ କ୍ଷୁଦ୍ର ସହର । ସେ କିଛି ଚିନ୍ତା କରି ସ୍ଥିର କରିପାରିବା ପୂର୍ବରୁ ସେମାନେ ସହର ଉପକଣ୍ଠରେ ପହଞ୍ଚି ଯାଇଥିଲେ । ସେଠି ଘରଦ୍ୱାର ଆଉ ନଥିଲା । ଧାଈଙ୍କ ମନ ସନ୍ଦେହରେ ଛାଇ ହୋଇଗଲା । ସେ ବର୍ତ୍ତମାନ ଧ୍ରୁବ ଯେ ସେ ଏକ ଅଜଣା ପଥର ପଥିକ । ଯାହା ସାଥିରେ ସେ ଯାଉଛନ୍ତି ସେ ଗୋଟିଏ ଛାଇ । ମଣିଷ ନୁହେଁ । ସେ ଭୟରେ ଥରିବାକୁ ଲାଗିଲେ ।

ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖିବା ଛଡ଼ା ତାଙ୍କର ଆଉ ଉପାୟ ନଥିଲା । ସେ ଭଗବାନଙ୍କୁ ବାରମ୍ବାର ମନେ ମନେ ଡ଼ାକିଲେ । ଛାଇ ପଛେ ପଛେ ଚାଲିବାକୁ ସେ ବନ୍ଦ କଲେ ନାହିଁ । ସେମାନେ ଏହା ଭିତରେ ଗୋଟିଏ ପୋଲ ପାଖରେ ପହଞ୍ଚିଗଲେ । ସେଠି ପଥର ଗୁଡ଼ିକ ଖୁବ୍ ବଡ଼ ବଡ଼ । ପ୍ରତ୍ୟେକଟିର ଲମ୍ବା ପ୍ରାୟ ଦଶ ମିଟର ହେବ । ସେସବୁ ଚାରିକୋଣିଆ । ଆୟତ କ୍ଷେତ୍ର ପରି । ପାଖରେ ଗୋଟିଏ ଗୁମ୍ଫା । ଛାଇଟି ତା ଭିତରେ ପଶିଲା । ଧାଈଟି ଯନ୍ତ୍ର ଚାଳିତ ପରି ସେ

ଗୁମ୍ଫା ଭିତରକୁ ଗଲେ । ସେଇଠି ଗୋଟିଏ ମଣିଷର ସ୍ୱର ସେ ଶୁଣିଲେ । ତାଙ୍କ ଦେହରେ ପ୍ରାଣ ପଶିଲା । ସେ କହୁଥିଲା – " ଆଇ, ଭିତରକୁ ଆସ । ସେ ଏଇଠି ଅଛି ।" ଭିତରେ ପଶି ସେ ଦେଖିଲେ, ସେ ଗୁମ୍ଫା ଭିତରେ ବହୁତ ଛାଇ । ସେମାନଙ୍କ ମୁଣ୍ଡରେ ଛୋଟ ଛୋଟ ଶିଙ୍ଗ । ସେମାନେ ଗୀତ ଗାଉଥିଲେ । ବିରାଡ଼ିପରି ବୋବାଉଥିଲେ । ତାଙ୍କର ଭୟ ଦ୍ୱିଗୁଣିତ ହୋଇଗଲା । ସେ ଯେ ଏକ ବିଚିତ୍ର ପରିବେଶରେ ପଶିଯାଇଛନ୍ତି, ଏଇ କଥା ହିଁ ସେ ଭାବୁଥିଲେ । କିନ୍ତୁ ଯଦେହେଲେ କଥା ସେ କହିଲେ ନାହିଁ । ଏତିକିବେଳେ ବଡ଼ ଶିଙ୍ଗ ଥିବା ଛାଇଟିଏ ତାଙ୍କ ପାଖକୁ ଆସି ତାକୁ ଗୋଟିଏ ଜାଗାକୁ ଡାକିନେଲା । ସେଠି ସେ ଓ ଛାଇ ଛଡ଼ା ଆଉ କେହି ନଥିଲେ । ସେଠି ସେ କହିଲା – "ଆଇ, ପୁଅଟିଏ ହେଲେ; ତୁମେ ଯାହା ଚାହିଁବ ତା ପାଇବ । ଯଦି ଝିଅଟି, ହୁଏ..." ସେ ସେଇଠି ଅଟକି ଗଲା । କିଛି ସମୟ ପରେ ସେ କହିଲା –''ଭଗବାନ ଏହା ନ କରନ୍ତୁ ।"

ଏକଥା ଶୁଣି ଧାଇଟି ଭୟରେ ଥରହର । ଛାନିଆ । ଡ଼ରିଡ଼ରି ସେ ଏନ୍ତୁଡ଼ି ଶାଳରେ ପଶିଲେ । ତାଙ୍କ ଘରକୁ ଯାଇଥିବା ଗର୍ଭବତୀ ବିରାଡ଼ିକୁ ସେଠି ଶୋଇଥିବାର ସେ ଦେଖିଲେ । ବିରାଡ଼ିଟି ମଣିଷ ଭଳି ଫୁସ୍ ଫୁସ୍ କରି କହିଲା "ଆଇ, ତୁମେ ଏଠି କିଛି ଖାଇବ ନାହିଁ । ଖାଇଲେ, ଛାଇ ହୋଇଯିବ ।"

ଧାଇଟି ବିରାଡ଼ିଟିର ସତର୍କବାଣୀ ମନେରଖିଥିଲେ । ବହୁତ ବଢ଼ିଆ ବଢ଼ିଆ ଖାଇବା ଜିନିଷ ତାଙ୍କ ପାଖରେ ଆଣି ଥୁଆହେଲା । ସମସ୍ତେ ତାଙ୍କୁ ଖାଇବାକୁ ଅନୁରୋଧ କଲେ । ସେ ସେମାନଙ୍କ କଥା ଶୁଣିଲେ ନାହିଁ । ଏପରିକି କୌଣସି ଖାଦ୍ୟ ଜିନିଷ ସ୍ପର୍ଶ ବି କଲେ ନାହିଁ ।

ପ୍ରସବ ସମୟ ଆସିବାରୁ ହାତକୁ ଜାମାରୁ ଉଠାଇ ପ୍ରସବ କାର୍ଯ୍ୟରେ ଲାଗିଗଲେ । ତାଙ୍କର ଭାଗ୍ୟ ଭଲ । ଅଣ୍ଡିରା ଛୁଆଟିଏ ଜନ୍ମହେଲା ।

ଏ ଖବର ଚାରିଆଡ଼େ ଖେଳିଗଲା । ଗୁମ୍ଫାରେ ଆନନ୍ଦର କୋଳାହଳ । ଏତିକିବେଳେ ଗୋଟିଏ ଛାଇ ଧାଇ ପାଖକୁ ଆସି କହିଲା – "ଏଥର ତମ ପାଳି । ତୁମେ ଯାହା ଚାହିଁବ, ଆମେ ସେ ସବୁ ଦେବୁ । ଏପରିକି ରାଜ୍ୟରୁ ଅଧେ ମାଗିଲେ ବି ଦିଆଯିବ । ଏଥିରେ ଲେଶମାତ୍ର ଆମେ କୁଣ୍ଠିତ ହେବୁ ନାହିଁ ।"

ଏତେବେଳକୁ ଧାଇ ପାଟି ଖୋଲିଲେ । ସେ କହିଲେ – "ମୋର କିଛି ଦରକାର ନାହିଁ । ମୋର କାମ ହିଁ ମୋର ପୁରସ୍କାର ।"

ଏକଥା ଶୁଣି ଛାଇଟି ଗମ୍ଭୀର ହୋଇ ଉଠିଲା । କଣ୍ଠ ତାର ରୁକ୍ଷ । ଧମକର ସୂଚନା । ସେ କହିଲା – " ତମକୁ କିଛି ନବାକୁ ହିଁ ହେବ । ଏଇଟା ଆମର ପ୍ରଥା । ନା କରିବାର ପ୍ରଶ୍ନ ଉଠୁନାହିଁ ।"

ଧାଇଟି ଦେଖିଲେ – ସେମାନେ ତାଙ୍କ କଥାରେ ଅଟଳ । ମନା କଲେ ଅବସ୍ଥା ଭିନ୍ନ ମୋଡ଼ ନେବ । ବରଂ ତାଙ୍କ କଥାରେ ରାଜି ହୋଇଗଲେ, କଥାଟା ସୁରୁଖୁରୁରେ ତୁଟିଯିବ । ଏତିକିବେଳେ ତାଙ୍କ ନଜର ଘର କଣରେ ଜମା ହୋଇଥିବା ରସୁଣ ଉପରେ ପଡ଼ିଲା । ସେ କହିଲେ – "ତୁମେ ଯଦି କିଛି ଜିନିଷ ଦେବାକୁ ଦୃଢ଼ ପରିକର, ତାହାହେଲେ ସେଠି ଜମା ହୋଇଥିବା ରସୁଣରୁ ଦିଟା ଦେଇଦିଅ ।"

ସେମାନେ ଆଉ ଡେ଼ରି କଲେ ନାହିଁ । ସାଥେସାଥେ କିଛି ରସୁଣ ଆଣି ତାଙ୍କ ପୋଷାକରେ ଝୁଲାଇ ଦେଲେ । ତାପରେ ସେମାନେ ତାଙ୍କୁ ନେଇ ତାଙ୍କ ଘର ପାଖରେ ଛାଡ଼ି ଆସିଲେ ।

ଘରେ ପହଞ୍ଚିଲା ବେଳକୁ ଧାଇଙ୍କର ଶକ୍ତି ସାମର୍ଥ୍ୟ କିଛି ନଥିଲା । ସେ ରସୁଣକୁ ଦୁଆର ମୁହଁରେ ଫିଙ୍ଗିଦେଇ ସିଧା ବିଛଣାରେ ପଡ଼ିଗଲେ । ସାଙ୍ଗେସାଙ୍ଗେ ନିଦ ଆସିଗଲା । ସେ ନିଘୋଡ଼ ନିଦରେ ଶୋଇପଡ଼ିଲେ ।

ପରଦିନ ସକାଳୁ ତାଙ୍କ ନିଦ ଭାଙ୍ଗିଲା ନାହିଁ । ନାତୁଣୀ ଯାଇ ତାଙ୍କୁ ଉଠାଇ ପଚାରିଲା- "ଆଈ, ଏତେ ସୁନା ତୁମେ କେଉଁଠୁ ଆଣିଲ ?"

ସୁନା ନାଁ ଶୁଣି ଆଈ ଉଠି ବସିଲେ । ତାପରେ ସେ ଯାହା ଦେଖିଲେ ଆଖି ତାଙ୍କର ଖୋସି ହୋଇଗଲା । ତାଙ୍କ ଆଣିଥିବା ସବୁ ରସୁଣ, ଏବେ ସୁନା ପାଲଟି ଯାଇଛି । ଏହା ଦେଖି ସେ ବିସ୍ମିତ । ତାପରେ ସେ ସୁନା ରସୁଣକୁ ତାଙ୍କର ସବୁ ନାତି ନାତୁଣୀ ମଧ୍ୟରେ ବାଣ୍ଟିଦେଲେ ।

ତାର ବହୁବର୍ଷ ପରେ ଧାଇଙ୍କର ଦେହାନ୍ତ ହୋଇଗଲା । ତାଙ୍କ ନାତି ନାତୁଣୀମାନଙ୍କ ମଧ୍ୟରୁ ଅନେକ ସେଠା ଛାଡ଼ି ଅନ୍ୟତ୍ର ଚାଲିଗଲେ । ସାରା ପୃଥିବୀରେ ସେମାନେ ଖେଦି ରହିଲେ । ତାଙ୍କ ଭିତରୁ ଯେଉଁମାନେ ସେଇଠି ଥିଲେ, ଆଈଙ୍କର ଦାନ ସୁନା ରସୁଣକୁ ସାଇତି ରଖିଲେ । ଏବେ ବି ସେ ରସୁଣ ରହିଛି ।

□□□

# ଭାଗ୍ୟକୁ ଠକି ହେବନାହିଁ

ଗୋଟିଏ ସହରରେ ଜଣେ ଧନୀ ଲୋକ ଥିଲା । ତା'ର ଅନେକ ପୁଅ । ଅଗାଧ ସଂପତ୍ତି । କେଉଁଥିରେ ଭଗବାନ ତାକୁ ଊଣା କରିନଥିଲେ । ସେ ସବୁବେଳେ ଭାବେ- ସବୁ ମଣିଷର ବିପତ୍ତି ଅଛି । ବିପଦ ବେଳେ ଏ ଧନ ସଂପତ୍ତି କ'ଣ ତାଙ୍କୁ ଉଦ୍ଧାର କରି ପାରିବ ? ସେ ଯେତେବେଳେ ମୃତ୍ୟୁ ମୁଖରେ ପଡ଼ିବେ ଏ ଭାଇ ବଂଧୁ ପୁଅ ପୁତୁରା ତାକୁ କ'ଣ ରକ୍ଷା କରି ପରିବେ ? ଦିନକୁ ଦିନ ମନ ଭିତରେ ତା'ର ଆସିଲା- ବିପଦ ବେଳେ ଓ ମୃତ୍ୟୁ ମୁଖରେ ସେ ଏକାନ୍ତ ଭାବରେ ଏକୁଟିଆ ରହିଯିବେ । ତାଙ୍କର ଅସହାୟତା ତାଙ୍କ ନିଜର । କେହି କେବେ ତାଙ୍କୁ ସାହାଯ୍ୟ କରିପାରିବେ ନାହିଁ । ଏ ଚିନ୍ତା ଓ ଭାବନାରେ ସେ ଭୟଭୀତ ହୋଇଗଲେ । ଖାଲି ସେତିକି ନୁହେଁ, ଛାଇଭଳି ତାଙ୍କ ମନରେ ଏ କଥା ଲାଗିରହିଲା । ସେ ଏପରି ତଟସ୍ଥ ହୋଇଗଲେ ଯେ କୌଣସି କାମ ସେ କରିପାରିଲେ ନାହିଁ ।

ସେ ଜାଣନ୍ତି – ଜ୍ୟୋତିଷମାନେ ଭବିଷ୍ୟତ କଥା କହିପାରନ୍ତି । ସେ ବହୁ ଜ୍ୟୋତିଷମାନଙ୍କୁ ଡ଼କାଇଲେ । ସେମାନଙ୍କୁ ତାଙ୍କର ମନ କଥା କହିଲେ । ତାଙ୍କର ଭବିଷ୍ୟତ କ'ଣ ସେ କଥା ସେ ଜାଣିବାକୁ ଚାହିଁଲେ । ସେମାନେ ବହୁଦିନ ଧରି ଗଭୀର ଭାବରେ ତାଙ୍କର ସମସ୍ୟା ବିଷୟରେ ଆଲୋଚନା କରି ଶେଷରେ ସେ ଯେଉଁଦିନ ମରିବେ, ସେହି ନିର୍ଦ୍ଦିଷ୍ଟ ଦିନ ଦେଇଦେଲେ । ତାପରେ କହିଲେ – "ହାତୀ କିମ୍ବା ଘୋଡ଼ା ଆଘାତରେ ତାଙ୍କର ମୃତ୍ୟୁ ହେବ ।"

ତାଙ୍କର ପ୍ରଶ୍ନର ଉତ୍ତର ମିଳିବା ପରେ ସେ ମୃତ୍ୟୁକୁ କିପରି ଏଡ଼ାଇବେ, ସେଇ ଚିନ୍ତାରେ ସେ ଘାରିହେଲେ । ଶେଷକୁ ସେ ସ୍ଥିରକଲେ- ମରୁଭୂମିରେ ଘୋଡ଼ା ଓ ହାତୀ ଚଳପ୍ରଚଳ ହୁଅନ୍ତି ନାହିଁ । ସେଠି ରହିଲେ, ସେମାନଙ୍କ ଦ୍ୱାରା ଆଘାତରେ ପ୍ରଶ୍ନ ଉଠିବ୍ ନାହିଁ । ତାପରେ ସେ ତାଙ୍କ ସ୍ତ୍ରୀକୁ ଧରି ମରୁଭୂମିକୁ ଚାଲିଗଲେ । ସେଠି ସେ ତମ୍ବୁ ପକାଇ ରହିଲେ । ତାଙ୍କର ବିଶେଷ ଆଦେଶ ଥିଲା – ସେ ଅଂଚଳକୁ କୌଣସି ଘୋଡ଼ା ହାତୀ ପ୍ରବେଶ କରିପାରିବ ନାହିଁ ।

ପିଲାମାନେ ସହରରେ ରହନ୍ତି । ମଝିରେ ମଝିରେ ବାପାମାଙ୍କୁ ଦେଖିବାକୁ ଆସନ୍ତି । ସେମାନଙ୍କର ଚଳିବା ପାଇଁ ଯାହା ଦରକାର ପ୍ରଚୁର ପରିମାଣରେ ସେ ସବୁ ନେଇ ଆସନ୍ତି । ତେଣୁ ଧନୀ ଲୋକଟି ସ୍ତ୍ରୀ ସାଥିରେ ମରୁଭୂମିରେ ରହିଲେ ବି ସେମାନଙ୍କର ଅସୁବିଧା କିଛି ହେଉନାଥିଲା । ସେମାନେ ବେଶ୍ ଆରାମ୍‌ରେ ତମ୍ବୁରେ ଦିନ କଟାଇ ଦେଉଥିଲେ ।

ଯେଉଁଦିନ ଧନୀ ଲୋକଟି ମରିବା ପାଇଁ ଭବିଷ୍ୟତ ବକ୍ତାମାନେ ନିର୍ଦ୍ଦିଷ୍ଟ କରି ଦେଇଥିଲେ, ସେଦିନଟି ଏହା ଭିତରେ ଚାଲିଗଲା । କିଛି ଦୁର୍ଘଟଣା ଘଟିଲା ନାହିଁ । ପରଦିନଟି ଧନୀ ଲୋକଟି ଭାରି ଖୁସି । ସେ ତାର ସ୍ତ୍ରୀକୁ କହିଲେ - ଜ୍ୟୋତିଷମାନଙ୍କ ଗଣନା ଅନୁସାରେ ଗଲା କାଲି ମୋର ମରିବାର କଥା । ଗଲା କାଲି ସୁରୁଖୁରୁରେ କଟିଗଲା । ଆମର କିଛି କ୍ଷତି ହେଲାନାହିଁ । ମୁଁ ଦେଖୁଛି, ଜ୍ୟୋତିଷମାନଙ୍କ ଗଣନା ଭୁଲ । ଏଥର ଆମର ତ ଡର ନାହିଁ । ଚାଲ ସହରକୁ ଚାଲିଯିବା । ସେଇଠି ରହିବା । ତାପରେ ଜ୍ୟୋତିଷମାନଙ୍କୁ ଡ଼କାଇ ସେମାନଙ୍କର ଗଣନା ଭୁଲ ବୋଲି ଜଣାଇଦେବା । ଭୁଲ ଗଣନା ପାଇଁ ନେଇଥିବା ପାରିତୋଷିକ ଫେରାଇ ଦେବାକୁ ବାଧ କରିବା ।"

ସ୍ତ୍ରୀଟି କହିଲା - "ଏ ପ୍ରକାର ନିଷ୍ପତ୍ତି ବିବେକୀର କାମ ନୁହେଁ । ଜ୍ୟୋତିଷମାନଙ୍କର ଗଣନାରେ ତ୍ରୁଟି ରହିବାର ସମ୍ଭାବନା ଅଛି । ତା'ମାନେ ନୁହେଁ ଯେ ତୁମେ ତୁମେ ଆଉ ମରିବ ନାହିଁ । ବେଳେବେଳେ ଭଗବାନଙ୍କ ଆର୍ଶିବାଦରେ ମଣିଷ ବେଶିଦିନ ବଂଚେ । ତମ ପକ୍ଷରେ ଏହାବି ସମ୍ଭବ ହୋଇପାରେ । କିନ୍ତୁ ସେମାନଙ୍କର ଭବିଷ୍ୟତ ବାଣୀ ଯେ ତୁମେ ହାତୀ କିମ୍ବା ଘୋଡ଼ା ଆଘାତରେ ମରିବ । ସହରରେ ହାତୀ ଘୋଡ଼ା ପ୍ରବଳ । ସହରକୁ ଗଲେ, ତମେ ତ ଆଉ ଖାଲି ବସି ରହିବ ନାହିଁ । ବାହାରକୁ ଯିବ । ସେମାନେ ତମକୁ କୁଦି ପକାଇବା ଅସମ୍ଭବ ନୁହେଁ । ଫଳରେ ତମର ମୃତ୍ୟୁ ଘଟିବ । ବରଂ ଏଠି ଆମେ ଭଲରେ ରହିଥାଏ । ଅଧିକ ଦିନ ରହିଲେ, କ୍ଷତି କ'ଣ ?"

ସ୍ତ୍ରୀର କଥାମାନି ଧନୀ ଲୋକଟି ସହରକୁ ଯିବା ପ୍ରସ୍ତାବକୁ ବାତିଲ କରିଦେଲେ । ତାପରେ ବେଶ୍ ଆରାମରେ ସେମାନେ ରହିଲେ । ଈଶ୍ୱର ତା କଥା ଭୁଲି ଗଲେ ବୋଲି ସେ ଥଟ୍ଟା କରି ଅନ୍ୟମାନଙ୍କ ଆଗରେ ବି କହିଲେ ।

ଦିନେ ମଧ୍ୟାହ୍ନ ଭୋଜନ ସାରି ଧନୀ ଲୋକଟି ତମ୍ବୁରେ ବସିଥିଲେ । ହଠାତ୍ ତମ୍ବୁଟା ଭାଙ୍ଗି ପଡ଼ିଲା । ତମ୍ବୁର ଅନ୍ୟ ଜାଗାରେ ତାର ସ୍ତ୍ରୀ ଚାକର ବାକର ଥିଲେ । ତମ୍ବୁ ଭାଙ୍ଗି ପଡ଼ିବାରୁ ସେମାନେ ପଦାକୁ ଧାଇଁ ଆସିଲେ । ସେମାନେ ଦେଖିଲେ - ଇଗଲଟି ଖାଇବା ପାଇଁ ଘୋଡ଼ାଟିକୁ ଧରି ତମ୍ବୁ ଉପରେ ବସି ପଡ଼ିବାରୁ ତମ୍ବୁଟି ଭାଙ୍ଗିଗଲା । ତେଣୁ ସେ ପୁଣି ଘୋଡ଼ାଟିକୁ ଧରି ଅନ୍ୟତ୍ର ପଳାଇଲା । ଲୋକମାନଙ୍କ ସାହାଯ୍ୟରେ ଧନୀ ଲୋକର ସ୍ତ୍ରୀଟି ତମ୍ବୁ ଉଠାଇଲା । ସେ ଦେଖିଲା – ତମ୍ବୁତଳେ ସ୍ୱାମୀ ତାର ଚାପି ହୋଇ ମରି ଯାଇଛନ୍ତି । ସ୍ତ୍ରୀ ଲୋକଟି ଖୁବ୍ କାନ୍ଦୁଥିଲା । ସେ ବିଳାପ କରୁଥିଲା - "ଭାଗ୍ୟ ବିନା ଅନ୍ୟ ଗତି ନାହିଁ । ଭାଗ୍ୟ ବିନା ଅନ୍ୟ ଗତି ନାହିଁ ।"



# ଭିକାରି ଓ ଗଧ

ଅନେକ ଦିନ ତଳେ ଭିକାରିଟିଏ ଥିଲା । ସେ ରାସ୍ତାରେ ଘାଟରେ ଦୁଆରେ ଦୁଆରେ ବୁଲି ଭିକ ମାଗେ । ତରେ ସେ ଯାଉ ଯାଉ ଜଣେ ବିଜ୍ଞ ପଣ୍ଡିତଙ୍କୁ ଗଧରେ ଯାଉଥିବାର ଦେଖିଲା । ତାଙ୍କୁ ଦେଖି ମନରେ ତାର ଭକ୍ତିଭାବ ଆସିଲା । ସେ ପଣ୍ଡିତଙ୍କ ପାଦତଳେ ପଡ଼ି ତାର ଦୁଃଖ ପୁର୍ଣ୍ଣ ଜୀବନ କଥା କହିଲା । ଭିକାରିର କରୁଣ କାହାଣୀ ଓ ତାର ଅନୁନୟତା ଦେଖି ପଣ୍ଡିତଙ୍କର ଦୟା ହେଲା । ସେ ତାଙ୍କ ଗଧଟିକୁ ଭିକାରିକୁ ଦେଇ କହିଲେ- "ଏଇଟି ମୋ ଗଧ । ଏହାର ଶକ୍ତି ଅଦ୍ଭୁତ । ତୋତେ ଏଇଟି ଦେଲି । ଯେତେବେଳେ ତୋର ଯାହା ଦରକାରହେବ, ଏହାକୁ କହିବୁ - ''ହେ ମୋ ଗଧ, ହେ ମୋ ଗଧ, ତୋ କରାମତି ଟିକିଏ ଦେଖା । ସାଥେ ସାଥେ ଗଧ ଯାହାଦେବ, ସେଥିରୁ ତୁ ଧନୀ ହୋଇଯିବୁ । କିନ୍ତୁ ଗୋଟିଏ କଥା ତୋତେ ମାନିବାକୁ ହେବ । ତୁ ଧନୀ ହେଲାପରେ ଦୟାଳୁ ହେବୁ । ଚାକର ଓ ଚାକାରାଣୀଙ୍କୁ ଭଲ ବ୍ୟବହାର କରିବୁ । ଯେତେବେଳେ ସେମାନଙ୍କୁ ଖରାପ ବ୍ୟବହାର କରିବୁ ଓ ନିଷ୍ଠୁର ହେବୁ, ତୋର ପୂର୍ବାବସ୍ଥା ଫେରି ଆସିବ । ଗଧ ଚାଲିଯିବ ।''

ଭିକାରିଟି ଗଧଟି ପଣ୍ଡିତଙ୍କ ଠାରୁ ପାଇଁ ଭାରି ଖୁସି । ପଣ୍ଡିତଙ୍କୁ ବହୁ ମୁଣ୍ଡିଆ ମାରି କୃତଜ୍ଞତା ଜଣାଇଲା । ତାପରେ ଗଧ ଉପରେ ବସି ଘରକୁ ଫେରିଲା । ବାଟରେ ଭାବିଲା- ପଣ୍ଡିତ କଥା ପରୀକ୍ଷା ନକରି ସଂପୂର୍ଣ୍ଣ ବିଶ୍ୱାସ କରିବା ଅନୁଚିତ । ତେଣୁ ସେ ଗଧକୁ ପରୀକ୍ଷା କରିବାକୁ ମନ ବଳାଇଲା । ଗଧ ଉପରୁ ଓହ୍ଲାଇ ପଡ଼ିଲା । ଗଧକୁ କହିଲା- "ହେ ମୋ ଗଧ, ହେ ମୋ ଗଧ, ତୋ କରାମତି ଟିକିଏ ଦେଖା ।" କଥା ତାର ସରିନାହିଁ, ସୁନାରୁପାର ଝଣ ଝଣ ଶବ୍ଦ ସେ ଶୁଣିଲା । ସେ ଦେଖିଲା - ଗଧ ଚାରିପଟେ ସୁନାରୁପା ବିଛାଡ଼ି ହୋଇ ପଡ଼ିଛି । ସେ ସବୁ ଗୋଟାଇ ସେ ଘରକୁ ଫେରିଲା ।

ପ୍ରତିଦିନ ଗଧ ଠାରୁ ସେ କିଛି ସୁନାରୁପା ସଂଗ୍ରହ କଲା । ଏବେ ଭିକାରି ଆଉ ଭିକାରି ହୋଇ ନାହିଁ । ସେ ଅଂଚଳର ସବୁଠାରୁ ଧନୀ ବିତ୍ତଶାଳୀ ଲୋକ । ତା'ର ଚାକର ବାକର ବହୁତ । ଘର ଦ୍ୱାର ଅନେକ । ସବୁବେଳେ ମଉଜ ମଜ୍‌ଲିସରେ ସେ ବୁଡ଼ି ରହିଥାଏ ।

କାଳକ୍ରମେ ପଣ୍ଡିତଙ୍କର ଉପଦେଶ ସେ ପାଶୋରି ପକାଇଲା । ଗରିବ ଭିକାରି ହେବା ଆଉ ତା କଳ୍ପନାରେ ନଥିଲା । ଏବେ ସେ ମାଲିକ ହିସାବରେ ଖୁବ୍ ରୁକ୍ଷ । ବ୍ୟବହାର ତାର କଦର୍ଯ୍ୟ । ଦୟା ଓ କ୍ଷମା ତା ପାଖରେ ସ୍ୱପ୍ନ । ଦୀନ ଦରିଦ୍ର ଦେଖିଲେ, ସେ ନିଆଁ ହୋଇଯାଏ । ଦୂର ଦୂର ମାର ମାର କରେ । ଧକ୍କା ଦେଇ ବିଦା କରିବା ପାଇଁ ଆଦେଶ ଦିଏ ।

ଭିକାରିଟି ଧନୀ ହେବାପରେ ଆୟ କଥା ସେ ଚିନ୍ତା କଲା ନାହିଁ । ଗଧ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ସେ । ଗଧଠାରୁ ପାଉଥିବା ଧନରେ ସେ ଧନୀ । ତା ଉପରେ ତାର ଆଡ଼ା ଚଉଡ଼ା ନିର୍ଭରଶୀଳ ।

ଦିନେ ଅଚାନକ ଭାବରେ ଗଧଟି କୁଆଡ଼େ ଚାଲିଗଲା । ଭିକାରିଟି ତାର ସବୁ, ଚାକର, ବାକର, ସାଙ୍ଗ, ସାଥି, ବନ୍ଧୁ ଓ ବାନ୍ଧବଙ୍କୁ ଲଗାଇ ଗଧକୁ ଖୋଜିଲା । ତାର ସବୁ ଚେଷ୍ଟା ଓ ଉଦ୍ୟମ ବ୍ୟର୍ଥ । ନିଷ୍ଫଳ । ଗଧର ଖୋଜଖବର କିଛି ମିଳିଲା ନାହିଁ ।

ଭିକାରିଟି ଦିନକୁ ଦିନ ଗରିବ ହେବାକୁ ଲାଗିଲା । ଆୟ ନାହିଁ, ବ୍ୟୟ ବହୁତ । ଅବସ୍ଥା ଅସମ୍ଭାଳ । ଚାକର ବାକର ଛଟେଇରେ ତାର ଅବସ୍ଥା ପରିବର୍ତ୍ତନ ହେଲା ନାହିଁ । ଭିକାରିଟି ପୂର୍ବ ଅବସ୍ଥା ମନେ ପଡ଼ିଲେ ଦେହ ତାର ଶୀତେଇ

ଉଠେ । ସେ ଡରିଯାଏ । ସେଇ ମର୍ମନ୍ତୁଦ ଯନ୍ତଣା ତା ଆଗରେ ଭୂତ ଭଳି ଠିଆ ହୁଏ ।

ଭିକାରିଟି ଆଉ ଅପେକ୍ଷା ନକରି ପଣ୍ଡିତଙ୍କ ଖୋଜ ଖବର ନେଲା । ପଣ୍ଡିତଙ୍କୁ ପାଇବାକୁ ତାକୁ କଷ୍ଟ ହେଲା ନାହିଁ । ଦେଖାକରି ତାଙ୍କ ଗୋଡ଼ତଳେ ପଡ଼ି ଭୋଭୋ ହୋଇ କାନ୍ଦିଲା । ତାପ୍ରତି ଦୟା କରିବାକୁ ଅନୁରୋଧ କଲା । ପଣ୍ଡିତ ଭାକାରିକୁ ଦେଖି ଅଗ୍ନିଶର୍ମା । ଦୟା ତ ଦୟା, ଭିକାରିର ଅନୁନୟତା ତାଙ୍କ ରାଗ ବି କମାଇଲା ନାହିଁ । ବରଂ ସେ ରାଗରେ ତାକୁ କହିଲେ-”ନିର୍ଲ୍ଲଜ । ମୋ କଥା ତୁ ରଖି ପାରିଲୁ ନାହିଁ । ଧନ ପାଇବାରୁ ତୁ ଯେ ଭିକାରି ଥିଲୁ ସେ କଥା ଭୁଲିଗଲୁ । ଭିକାରିମାନଙ୍କୁ ଅଯଥା ଅପମାନ ଦେଇ ଲାଞ୍ଛିତ କରି ତୋ ଦୁଆର ମୁହଁରୁ ତଡ଼ି ଦେଲୁ । ଚାକର ଚାକରାଣୀଙ୍କର ହଇରାଣର ସୀମା ରଖିଲୁ ନାହିଁ । ଦୟା ତୋ ପାଖରେ ସ୍ୱପ୍ନ ହୋଇଗଲା । ତୁ ଦୟା ପାଇଁ ଅଯୋଗ୍ୟ । ପୁଣି ଭିକାରି ହୋଇ ଭିକମାଗି ବୁଲିବୁ ।”

ପ୍ରକୃତରେ ତାହା ହିଁ ହେଲା । ଅଳ୍ପଦିନ ଭିତରେ ଭିକାରିଟି ଯେଉଁ ଭିକାରି ଥିଲା, ସେଇ ଭିକାରି ହୋଇ ଭିକମାଗି ବୁଲିଲା ।



# ତୁମେ ଯାହା, ତୁମେ ତାହା ଦିନେ ଜାଣିବ

ବହୁଦିନ ତଳର କଥା ।ଲୁଧିଆନାର ଜଂଗଲରେ ଗୋଟିଏ ବୁଢ଼ୀ ରହୁଥିଲା । କୁଡ଼ିଆଟି ତା’ର ଛୋଟ । ପାଖରେ ଗୋଟିଏ କୂଅ । ସେ ଜଙ୍ଗଲରେ ଫୁଟୁଥିବା ଛତୁ ଖାଏ । ତା କୁଡ଼ିଆ ସମ୍ମୁଖରେ ଥିବା କୂଅର ପାଣି ପିଏ । ସେ ସେଇଥିରେ ବଂଚେ । ସେ ଭାରି ଭଦ୍ର । ଦୟାଳୁ । ସ୍ନେହୀ । କିନ୍ତୁ ଲୋକମାନଙ୍କ ସାଥୀରେ ମିଶିବାକୁ ସେ କୁଣ୍ଠିତ । ସେମାନଙ୍କଠାରୁ ସବୁବେଳେ ଦୂରରେ ରହେ । ସବୁବେଳେ ତା ତୁଣ୍ଡରେ ଗୋଟିଏ କଥା । ସେଇଟା ହେଲା – “ଯେ ଯାହା, ଦିନେ ସେ ତାହା ଜାଣି ପାରିବ ।”

ଲୋକଙ୍କ ଆଖିରେ ସେ ଗୋଟେ କାହାଣୀ । କଂଚା ଖାଇଯିବ । ସେଥିପାଇଁ ଲୋକେ ତାକୁ ଡ଼ରନ୍ତି । ପାଖ ତା’ର ମାଡ଼ନ୍ତି ନାହିଁ ।

ଜଙ୍ଗଲ ପାଖରେ ଜମିଦାରଙ୍କ ଘର । ବୁଢ଼ୀଟି ବେଳେବେଳେ ଜମିଦାରଙ୍କ ଘର ଆଡ଼େ ମାଡ଼ିଆସେ । ଜମିଦାର ତା ଉପରେ ବିରକ୍ତ ହୁଅନ୍ତି ନାହିଁ । ପ୍ରତିଥର ଖାଇବାକୁ କିଛି ଜିନିଷ ତାକୁ ଦିଅନ୍ତି । ବୁଢ଼ୀଟି ଖୁସିହୁଏ । ଆନନ୍ଦ ମନରେ ଚାଲିଯାଏ । କିନ୍ତୁ ଜମିଦାର ବୁଢ଼ୀଟି ଉପରେ ଅସନ୍ତୁଷ୍ଟ । ଶ୍ରଦ୍ଧା ତାଙ୍କର ତା ପ୍ରତି ନଥାଏ । ଜମିଦାର ସେ । ଦୟାର ଅବତାର ବୋଲି ଲୋକଙ୍କୁ ଦେଖାଇବାକୁ ହେବ । ସେଥିପାଇଁ ଏ ଛଳନା । ବୁଢ଼ୀ ଯେ ଆଉ ନ ଆସୁ, ସେ କଥା ସବୁବେଳେ ଭାବନ୍ତି । କିନ୍ତୁ ବୁଢ଼ୀ ତ କାଭାଁ ଆସେ । ଆଗରୁ ତା ପ୍ରତି କିଛି ବ୍ୟବସ୍ଥା କରିବାଟା ଅସମ୍ଭବ ହୋଇପଡ଼େ ।

ଥରେ ବୁଢ଼ୀର ଦେହ ଟିକିଏ ଖରାପ ହେଲା । ଜଙ୍ଗଲରେ ବୁଲି ଛତୁ ଖୋଜିବା ତା ପକ୍ଷେ ସମ୍ଭବପର ହେଲା ନାହିଁ । ପ୍ରାୟ ପ୍ରତିଦିନ ସେ ଜମିଦାର ଘରକୁ ଆସିଲା । ଏଇ ମଉକା ଦେଖି ଜମିଦାର ବୁଢ଼ୀପାଇଁ ଗୋଟିଏ ସୁନ୍ଦର କେକ୍ କରିବାକୁ ଆଦେଶ ଦେଲେ । କେକ୍‌ଟି ହେବାପରେ ତାହା ଜମିଦାରଙ୍କୁ ଦିଆଗଲା । ଜମିଦାର ତାକୁ ପାଖରେ ରଖିଲେ । ସମସ୍ତଙ୍କ ଅଗୋଚରରେ ସେଥିରେ କିଛି ଉତ୍କଟ ବିଷ ଦେଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଏହା ଖାଇଲେ ବୁଢ଼ୀଟି ସାଙ୍ଗେ ସାଙ୍ଗେ ଟଳି ପଡ଼ିବ । ତେଣୁ ସେ ନିଷ୍କଣ୍ଟକ ହୋଇଯିବେ ।

ବୁଢ଼ୀ ସେଦିନ ବି ଆସି ପହଞ୍ଚିଲା ବେଳକୁ ଜମିଦାରଙ୍କ ଘରେ ବହୁତ କୁଣିଆ । ସେମାନଙ୍କ ଚର୍ଚ୍ଚାରେ ଜମିଦାର ବ୍ୟସ୍ତ । ବୁଢ଼ୀ ବାହାରେ ବସି ଗୁଣୁଗୁଣୁ ହୋଇ କହୁଥାଏ – "ଯେ ଯାହା, ଦିନେ ସେ ତାହା ଜାଣିପାରିବ ।"

ଧୂର୍ତ୍ତ ଜମିଦାର ତା କଥା ଶୁଣି ମନକୁ ମନ କହିଲେ – "ରହ ବ୍ୟସ୍ତ ହୁଅ ନାହିଁ । ଅଳ୍ପ ସମୟରେ ଯମଦୂତ ଆସିବେ । ତୋତେ ଦେଖିବେ । ତୁ କ'ଣ ଜାଣିପାରୁଛୁ ?"

ଅତିଥିମାନେ ଯିବା ପରେ ଜମିଦାର ଆସି ବୁଢ଼ୀକୁ କହିଲେ – "ମୁଁ ବ୍ୟସ୍ତ ଥିଲି । ଯଦିଓ ତୋ ପାଇଁ ବଢ଼ିଆ କେକ୍‌ଟିଏ କରାଇଛି, ତୋତେ ଖାଇବାକୁ ଦେଇ ପାରିଲି ନାହିଁ । ତୁ ଏପରି କେକ୍ କେବେ ଖାଇନଥିବୁ । ଏହାକୁ ନେଇଯା, ଘରେ ଆରାମରେ ଖାଇବୁ ।"

ବୁଢ଼ୀଟି ଜମିଦାରଙ୍କ ପାଖରେ ଆଉ ଅପେକ୍ଷା କରିବାକୁ ଚାହିଁଲା ନାହିଁ । କେକ୍ ପାଇଁ ଧନ୍ୟବାଦ ଜଣାଇ ସାଙ୍ଗେ ସାଙ୍ଗେ ଘରକୁ ବାହାରି ପଡ଼ିଲା ।

ସେଦିନ ଜମିଦାରଙ୍କ ସାନ ପୁଅ ଶିକାର ପାଇଁ ଜଙ୍ଗଲକୁ ଯାଇଥିଲା । ସାଥିରେ ଅନେକ ସହଚର ଥିଲେ । କିନ୍ତୁ ସେମାନେ ବାଟବଣା ହୋଇଗଲେ । ବହୁ କଷ୍ଟରେ ସେମାନେ ବୁଢ଼ୀ କୁଡ଼ିଆରେ ପହଞ୍ଚିଲେ । ସେତେବେଳକୁ ସେମାନେ କ୍ଲାନ୍ତ । କ୍ଷୁଧାର୍ତ୍ତ । ବୁଢ଼ୀକୁ ସେମାନେ ଜାଣନ୍ତି । ତେଣୁ ତାକୁ କହିଲେ - "ସାଉସୀ, ଭୋକରେ ଆମ ପେଟ ଜଳୁଛି । ଶୋଷରେ ଛାତି ଫାଟି ଯାଉଛି । ଯଦି କ'ଣ ଅଛି ଖାଇବାକୁ ଦେ । ନହେଲେ ପିଇବାକୁ ପାଣି ଦେ ।"

ବୁଢ଼ୀଟି ଠିକ୍ ସମୟରେ ଜମିଦାରଙ୍କର ଘରୁ କେକ୍ ଆଣି ପହଞ୍ଚିଥିଲା । ଜମିଦାରଙ୍କର ପୁଅ ଓ ତାର ସାଥିମାନଙ୍କୁ ଦେଖି କହିଲା- "ପୁଆରେ, ଜମିଦାର ମୋତେ ଗୋଟିଏ ବଢ଼ିଆ କେକ୍ ଦେଇଛନ୍ତି । ମୁଁ କ'ଣ ତାକୁ ଖାଇବି ? ତୁମେ ନିଅ ଖାଅ । ମୁଁ ପାଣି ଆଣି ଦେଉଛି । ପିଅ ।"

ବୁଢ଼ୀଟି ଜମିଦାରଙ୍କ ଘରୁ ଆଣିଥିବା କେକ୍‌ଟି ଜମିଦାରଙ୍କ ପୁଅ ଆଗରେ ରଖି କୂଅକୁ ପାଣି ପାଇଁ ଗଲା । ଜମିଦାରଙ୍କ ପୁଅ ଟିକିଏ ଡ଼େରି କଲା ନାହିଁ । କେକ୍‌ରୁ ଖଣ୍ଡେ ଭାଙ୍ଗି ଖାଇଦେଲା । ଆଉ ସେ ଯାଏ କୁଆଡ଼େ ? ସେ ଚିତ୍କାର କଲା । ତାପରେ ଟଳି ପଡ଼ିଲା ।

ତା'ର ସାଥିମାନେ ଏକଥା ଦେଖି ଛାନିଆ । ବୁଢ଼ୀଟି ବି ହାଉଳି ଖାଇଲା । ସାଥିମାନେ ଡ଼େରି ନକରି ଜମିଦାରଙ୍କ ପାଖକୁ ଖବର ପଠାଇଲେ ।

ଖବର ପାଇ ଜମିଦାର ଧାଇଁ ଆସିଲେ । ପୁଅ ପାଖରେ ତାଙ୍କର ବୁଢ଼ୀଟିକୁ ଦେଇଥିବା କେକ୍ ପଡ଼ିବାର ଦେଖିଲେ । କଥାଟା ଜାଣିବାକୁ ଆଉ ତାଙ୍କର ବାକି ନଥିଲା । ସେ ସେଠି ପଡ଼ି ଭୋ ଭୋ ହୋଇ କାନ୍ଦିଲେ । ସେତେବେଳେ ବୁଢ଼ୀର କଥା ତାଙ୍କ କାନରେ ବାଜୁଥିଲା - "ତୁମେ ଯାହା, ଦିନେ ତାହା ତୁମେ ଜାଣିବ ।"

ଇହୁଦୀ ମାନଙ୍କର ଏକ ପ୍ରବଚନ ଅଛି -

ଯେଉ ଗାତ ଯିଏ ଖୋଳେ,
ସେଇ ଗାତରେ ସେ ହିଁ ପଡ଼େ ।



# ପରକୁ ଠକ ନାହିଁ, ଠିକିଯିବ ।

ଅଂଧ ଭିକାରିଟିଏ । ସହର ବାହାରେ ତାର କୁଡ଼ିଆ । ସେଠି ସେ ରହେ । ଦିନଯାକ ସହରରେ ସେ ଭିକ ମାଗେ । ଯାହା ଭିକ ପାଏ, ତାକୁ ସେ ତାର କୁଡ଼ିଆରେ ଲୁଚାଇ ରଖେ ।

ଦିନକର କଥା । ସେ ଗୋଟିଏ ଦୋକାନୀକୁ ଭିକ ମାଗିଲା । ଦୋକାନଟି ପାଖରେ ରେଜା ନଥିଲା । ସେ ଭିକାରିକୁ କହିଲା – " ମୋ ପାଖରେ ରେଜା ନାହିଁ । ମୁଦ୍ରାଟି ଭଙ୍ଗାଇ ଦେଲେ, ସେଥିରୁ ଭିକ ଦେବି ।"

ଭିକାରିଟି ମୁଣ୍ଡ ହରାଇ ସମ୍ମତ ଜଣାଇଲା । ଦୋକାନଟି ଗୋଟିଏ ଟଙ୍କା ରେଜା ପାଇଁ ଭିକାରିକୁ ଦେଲା । ଆଙ୍ଗୁଠିରେ ଟଙ୍କାକୁ ସେ ପରୀକ୍ଷା କଲା । ସେଇଟା ଗୋଟିଏ ଟଙ୍କା ବୋଲି ଭିକାରିଟି ଯେତେବେଳେ ସଂଦେହ ମୁକ୍ତ ହେଲା, ସେ ଆଗରୁ ମାଡ଼ି ଚାଲିଲା ।

ଦୋକାନୀଟି ପଛରୁ ଡ଼ାକି କହିଲା – " କିରେ ରେଜା ଦେବୁ ପରା ? ଟଙ୍କାଟା ନେଇ କୁଆଡେ ଯାଉଛୁ ?"

ଭିକାରି ବଡ଼ ପାଟିରେ ଉତ୍ତର ଦେଲା – "ଭିକ ତ ଦେଲ ନାହିଁ । ଟଙ୍କାକର ରେଜା କ'ଣ ତଣ୍ଡ ନେବ ?''

ଦୋକାନୀ କି ଛାଡ଼େ । ସେ ଚମକି ଆସିଲା ଦୋକାନରୁ । ଅଂଧ ଭିକାରିଟି କହିଲା – ''ମୁଁ ଅଂଧ । ପୁଣି ଭିକାରି । ତମର ଦୟା ହୁଅନ୍ତା ସିନା, ମୋତେ ପୁଣି ଠକୁଚ । ଧର୍ମ ସହିବ ?"

ପାଟି ଯେଉଁଠି ହୁଏ, ଲୋକେ ସେଠି ଜୁଟନ୍ତି । ଏତ ଲୋକଙ୍କର ଅଭ୍ୟାସ । ଚାହୁଁ ଚାହୁଁ ବହୁ ଲୋକ ସେଠି ରୁଣ୍ଡ ହୋଇଗଲେ । କଥା ନ ବୁଝି ଯେ ନୁଆଣିଆ, ତା ପଟେ ହେବା ଲୋକଙ୍କର ଅଭ୍ୟାସ । ସବୁ ଜାଗାରେ ସବୁ କ୍ଷେତ୍ରରେ ଏଇଟା ପ୍ରଚଳନ । ଲୋକେ ଭିକାରି ପଟ ହୋଇ ଦୋକାନୀକୁ ନିନ୍ଦା କଲେ । ବିଚାରା ଦୋକାନୀ ଅପଦସ୍ତ ହୋଇ ଦୋକାନକୁ ଫେରିଲା ।

ଦୋକାନୀର ମନର କଥା ମନରେ ଥାଏ । ଆଉ ଦିନେ ସେ ଅଂଧକୁ ଭେଟିଲା । ତାକୁ କିଛି କହିଲା ନାହିଁ । ଅଂଧ ନଜାଣିଲା ଭଳି ଦୋକାନୀଟି ତା

ପିଛା ଧରିଲା । ସେ ଦେଖିଲା - ଅଂଧଟି ଗୋଟିଏ କୁଡ଼ିଆରେ ପଶିଲା । ସେ କୁଡ଼ିଆ କଣରେ ଇଟାଟିଏ ଥିଲା । ତାକୁ ବାହାର କଲା । ସେଠି ଗୋଟିଏ ଗାତ ଥିଲା । ଦିନଯାକ ଯେଉଁ ପଇସା ଭିକରୁ ସଂଗ୍ରହ କରିଥିଲା, ତାକୁ ସେଇ ଗାତରେ ରଖିଦେଲା । ପୁଣି ଇଟାଟିକୁ ତା ଜାଗାରେ ଥୋଇଦେଲା । ଦୋକାନୀଟି ଏତକ ଦେଖି ସେଠୁ ଫେରି ଆସିଲା ।

ପରଦିନ ସକାଳୁ ସକାଳୁ ଦୋକାନୀଟି କୁଡ଼ିଆକୁ ଗଲା । ସେଠି ଅଂଧ ନଥିଲା । ସେ କୁଡ଼ିଆରେ ପଶି ଇଟାଟି ବାହାର କଲା । ଅଂଧର ସଂଚିତ ସମସ୍ତ ଧନ ଘେନି ଆସିଲା । ସଂଧ୍ୟା ପୂର୍ବରୁ ଅଂଧ କଣ କରୁଛି, ଦେଖିବା ପାଇଁ ପୁଣି କୁଡ଼ିଆ ପାଖରେ ଅପେକ୍ଷା କଲା ।

ସେ ଦିନ ସଂଧ୍ୟା ବେଳକୁ ଅଂଧ ସବୁଦିନପରି କୁଡ଼ିଆକୁ ଆସିଲା । ଇଟାଟି ବାହାର କରି ଦେଖିଲାଯେ ତାର ଗଚ୍ଛିତ ସଂପତ୍ତି ସବୁ ଲୁଟ ହୋଇଯାଇଛି । ସେ ବିକଳ ହୋଇ ଖୁବ୍ କାନ୍ଦିଲା । "ମୁଁ ଭାସିଗଲି, ମୁଁ ଭାସିଗଲି" ବୋଲି ଚିତ୍କାର କଲା । ତାପରେ ସେ କାନ୍ଦି କାନ୍ଦି କୁଡ଼ିଆରୁ ବାହାରିଲା । ଦୋକାନୀଟି ତାର ପଛେ ପଛେ ଚାଲିଥାଏ । ଶେଷରେ ସେ ଆଉ ଜଣକ ପାଖରେ ପହଞ୍ଚିଲା । ସେ ବି ଅଂଧ । ବୋଧହୁଏ ସେ ତାର ସାଥି । ତା ଆଗରେ ଖୁବ୍ କାନ୍ଦିଲା । ବଂଧୁ ତାର ଘଟଣା କଣ ବୋଲି ଜାଣିବାକୁ ଚାହିଁଲା । ପ୍ରଥମ ଅଂଧ କହିଲା - "ମୋର ସଂଚିତ ସମସ୍ତ ଅର୍ଥ ଚୋରି ହୋଇଗଲା ।"

ଦ୍ୱିତୀୟ ଅଂଧ ପଚାରିଲା - "ତୁ କେମିତି ରଖିଥିଲୁ ?"

ପ୍ରଥମ ଅଂଧ କହିଲା- "ମୋ କୁଡ଼ିଆ କଣରେ ଗୋଟେ ଗାତ କରିଥିଲି । ସେଥିରେ ସବୁ ପଇସା ରଖେ । ଇଟାଟା ତା ଉପରେ ଘୋଡ଼ାଇ ଦେଇଥାଏ ।"

ଦ୍ୱିତୀୟ ଅଂଧ କହିଲା - "କେଡ଼େ ବୋକା ତୁ'' । ତୁ କେମିତି ଇଟା ତଳେ ଟଙ୍କା ସବୁ ରଖିଲୁ ?"

ପଥମ ଅଂଧ କହିଲା - "ସେଠି ନରଖି କଣ ମୁଁ କରିଥାନ୍ତି ?"

ଦ୍ୱିତୀୟ ଅଂଧ କହିଲା - "ଏଇ ଦେଖ, ମୋର ଯେଉଁ ବାଡ଼ିଟି ଅଛି, ଏଇଟା ପୋଲା । ମୁଁ ଏହା ଭିତରେ ପଇସା ରଖେ । ରାସ୍ତାରେ ଏଇଟା ପଡ଼ିଲେ ଲୋକେ ଛୁଇଁବେ ନାହିଁ । ଏଇଟା ସବୁଠୁ ନିରାପଦ ।"

ଦୋକାନୀ ତ ପ୍ରଥମ ଅଂଧ ପଛେ ପଛେ ଯାଇଥିଲା । ଦୁଇ ଅଂଧଙ୍କର କଥାବାର୍ତ୍ତା ଶୁଣିଲା । ଏତିକିବେଳେ ଦ୍ୱିତୀୟ ଅଂଧର ତାର ବାଡ଼ିଟି ଅନ୍ୟ ଅଂଧ ଆଡ଼କୁ ବଢ଼େଇ ଦେଲା । ଦୋକାନୀ ସେ ବାଡ଼ିଟିକୁ ତା ହାତରୁନେଲା । କିଛିଦୂରକୁ ଚାଲିଗଲା । କିଛି ସମୟ ପରେ ଦ୍ୱିତୀୟ ଅଂଧ ପ୍ରଥମ ଅଂଧକୁ ତାର ବାଡ଼ି ମାଗିଲା । ପ୍ରଥମ ଅଂଧ ଆଶ୍ଚର୍ଯ୍ୟ ହୋଇ କହିଲା - " କି ବାଡ଼ି ?''

ଦ୍ୱିତୀୟ ଅଂଧ ରାଗି କହିଲା - "ଓଃ ତୁ ମୋତେ ଠକିକରି ମୋର ପଇସା ଚୋରି କରିବାକୁ ଆସିଥିଲୁ ?"

ପ୍ରଥମ ଅଂଧ ପ୍ରତିବାଦ କଲା । ଉଭୟେ ରାଗରେ ନିଆଁ ହୋଇଗଲେ । ତାପରେ ସେମାନେ ପରସ୍ପରକୁ ଗାଳିଗୁଲଜ କଲେ । କିଛି ସମୟ ପରେ ସେମାନେ ତୃତୀୟ ଅଂଧ ପାଖକୁ କଳିର ନିଷ୍ପତ୍ତି ପାଇଁ ବାହାରିଲେ । ଦୋକାନୀଟି ତାଙ୍କ ପିଛା ଧରିଯାଏ । ଅଂଧମାନେ ଦୋକାନୀଟିର ଗତିବିଧି ବିଷୟରେ କିଛି ଜାଣିପାରୁନଥିଲେ ।

ତୃତୀୟ ଅଂଧକୁ ଭେଟି ଅଂଧ ଦୁଇଜଣଯାକ ତାଙ୍କର ସମସ୍ତେ କଥା କହିଲେ । ପ୍ରଥମର କିପରି ଟଙ୍କା ଇଟା ତଳୁ ଗଲା, ଆଉ ସେ କିପରି ଆସି ତାର ସାଙ୍ଗକୁ ଠକି ଟଙ୍କା ବାଡ଼ିକୁ ନେଇଗଲା, ସେ କଥା ସବୁ ତୃତୀୟ ଅଂଧ ଶୁଣି କହିଲା -"ତୁମେମାନେ ବଦମାସ୍ । ଟଙ୍କା କଣ ଇଟାତଳେ କି ବାଡ଼ିଭିତରେ ରଖାଯାଏ ? ଏଇ ଦେଖ ମୋ ଜାମା । ମୁଁ ସବୁବେଳେ ଏହାକୁ ପିନ୍ଧିଥାଏ । ଜାମା ଦେହରୁ କାଢ଼ି ଅନ୍ୟ ଦୁଇ ଅଂଧ ବଂଧୁଙ୍କୁ ଦେଖାଥବା ପାଇଁ ତାଙ୍କ ଆଡ଼କୁ ବଢ଼ାଇ ଦେଲା । ସାଙ୍ଗେ ସାଙ୍ଗେ ଦୋକାନୀଟି ସେ ଜାମାଟିକୁ ନେଇ ଦୂରକୁ ଟିକିଏ ଚାଲିଗଲା । କିଛି ସମୟପରେ ତୃତୀୟ ଅଂଧ ତାର ଜାମା ଖୋଜିଲା । ଦୁଇ ଅଂଧକୁ ତାର ଜାମା କଥା ପଚାରିଲା । ସେ ଦୁହେଁ ଏକା ସ୍ୱରରେ କହିଲେ- 'କି ଜାମା ? ଆମେ ସେ କଥା କିଛି ଜାଣିନାହୁଁ ।"

ତୃତୀୟ ଅଂଧଟି କାନ୍ଦି କରି ତାର ଜାମା ପାଇଁ ଚିତ୍କାର କଲା । ତାପରେ କ'ଣ କରାଯିବ, ଏହା ସ୍ଥିର କରିବା ପାଇଁ ଆଉ ଜଣେ ବଂଧୁ ପାଖକୁ ସେମାନେ ଗଲେ । ସେ ବି ଅଂଧ । ଦୋକାନୀଟି ତାଙ୍କ ପିଛା ବି ଛାଡୁନଥାଏ । ସେମାନେ ଚତୁର୍ଥ ଅଂଧ ପାଖରେ ପହଞ୍ଚି ସମସ୍ତ କଥା ତା ଆଗରେ ବୟାନ କଲେ ।

ପ୍ରଥମ ଅଂଧ କହିଲା -" ମୁଁ ଇଟା ତଳେ ଗାତରେ ଟଙ୍କା ରଖିଥିଲି ତାକୁ କିଏ ନେଇଗଲା ।" ଦ୍ୱିତୀୟ କହିଲା- "ମୁଁ ଗୋଟେ ବାଡ଼ି ଭିତରେ ମୋ ପଇସା ରଖେ । ପ୍ରଥମ ଅଂଧ ଆସି ତା ଦୁଃଖ କହିବାରୁ ମୁଁ ବାଡ଼ିଟି ତାକୁ ଦେଖାଇଲି । ସେ ବାଡ଼ିକୁ କିଏ ନେଇଗଲା ।" ତୃତୀୟ କହିଲା- "ମୁଁ ଜାମାରେ ଟଙ୍କା ରଖେ । ମୋର ଦୁଇଅଂଧ ବଂଧୁ ଆସି ତାଙ୍କ ଦୁଃଖ କହିବାରୁ ମୁଁ ମୋ ଜାମାଟା ତାଙ୍କୁ ଦେଖାଇଲି । ମୋତେ ଠକି କିଏ ଜାମାଟା ନେଇଗଲା ।" ଚତୁର୍ଥ ଅଂଧ କହିଲା - "ତୁମ୍ଭେମାନେ ବୋକା । ଟଙ୍କା କ'ଣ ଇଟାତଳେ, ବାଡ଼ିଭିତରେ ଆଉ ଜାମା ପକେଟରେ ରଖାଯାଏ ? ଦେଖ, ଏଇ ମୋର ଅଣ୍ଟା ପଟିଟା । ଏହା ଦୁଇ ଇଞ୍ଚ ଚଉଡ଼ା । ଏହାକୁ ଗୋଟିଏ ବେଲ୍ଟ ପରି କରାଯାଇଛି । ମୁଁ ସେଥିରେ ମୋ ଟଙ୍କା ପଇସା ରଖେ । ସେ ଅଣ୍ଟାପଟିକୁ ବାହାର କରି ତାର ସାଙ୍ଗମାନଙ୍କ ଆଡ଼କୁ ବଢ଼େଇ ଦେଲା । ଦୋକାନୀ ତ ନିଶବ୍ଦରେ ସେଠି ଠିଆ ହୋଇଥିଲା । ଆସ୍ତେ ଆସ୍ତେ ସେଇ ଅଣ୍ଟା ପଟିକୁ ସେ ନେଇଗଲା । ଟିକକପରେ ଚତୁର୍ଥ ଅଂଧ ତାର ଅଣ୍ଟା ପଟିଟାକୁ ଖୋଜିଲା । ଅନ୍ୟ ତିନିଜଣ ଅଂଧକୁ ପଚାରିଲା - "ମୋର ଅଣ୍ଟା ପଟି କୁଆଡ଼େ ଗଲା ?" ତିନିଜଣ ଯାକ ଅଂଧ କହିଲେ - "ଆମେ ତାକୁ ଛୁଇଁନୁ । ତୁ କାହିଁକି ଆମକୁ ଦୋଷ ଦେଉଛୁ ?"

ଚତୁର୍ଥ ଅଂଧ କି ଛାଡ଼େ । ସେ ଖୁବ୍ ପାଟିକଲା । ଚାରିଜଣଙ୍କ ମଧରେ ଯୁଦ୍ଧ ଆରମ୍ଭ ହେବାକୁ ଯାଉଥିଲା । ସମସ୍ତଙ୍କୁ ସାନ୍ତ୍ୱନା ଦେଇ ଚତୁର୍ଥ ଅଂଧ କହିଲା "ଭାଇ କୌଣସି ଦେଖିପାରୁଥିବା ଲୋକ ଆମ ପିଛା ଧରିଛି । ଆମେ ଆମର ଗୁପ୍ତ କଥା ପ୍ରକାଶ କରିବାମାତ୍ରେ ସେ ତାର ସୁବିଧା ନେଇ ଆମର ସଂଚିତ ଧନ ହରଣ କରିନେଉଛି । ଆମେ ଅଯଥା ବାଡ଼ିଆପିଟା ହୋଇ ଲାଭ ନାହିଁ । ଆସ ଆମେ ଚାରିଜଣ ଯାକ ସାଥି ହୋଇ ଯିବା । ଭିକ ମାଗିବା । ଯାହା ପାଇବା, ଚାରିଭାଗ କରି ବାଣ୍ଟିନେବା ।"

ଏକଥାଟି ଅନ୍ୟମାନଙ୍କ ମନକୁ ବେଶ୍ ପାଇଲା ।

ସେଇଦିନୁ ଚାରିଜଣ ଅଂଧ ସାଥି ହୋଇ ଭିକ ମାଗିବାକୁ ଆରମ୍ଭ କଲେ । ସହର ଅନ୍ଦିକନ୍ଦି ବୁଲି ଭିକ ମାଗିଲେ । ଆଉ ଯାହା ମିଳିଲା, ତାକୁ ବାଣ୍ଟିନେଲେ ।

ଦିନେ ଭିକ ମାଗି ଯାଉ ଯାଉ ସେମାନେ ସେଇ ପୁରୁଣା ଦୋକାନ ପାଖରେ ପହଞ୍ଚିଲେ । ଦୋକାନୀଟି ଅଂଧମାନଙ୍କୁ ଚିହ୍ନି ପକାଇଲା । ସେମାନଙ୍କୁ

ସେ ଠକି ନେଇଥିବାରୁ ତାର ସେମାନଙ୍କ ପ୍ରତି ଦୟା ହେଲା । ସେ ସେମାନଙ୍କୁ ଗୋଟିଏ ଗୋଟିଏ ଟଙ୍କା ଦେଲା । ଟଙ୍କାଟିଏ ଲେଖାଏଁ ପାଇଥିବା ଚାରିଜଣ ଅଂଧଙ୍କର ସଂଦେହ ହେଲା । ସେମାନେ କୁହାକୁହି ହେଲେ - "ସାଧାରଣତଃ ଦୋକାନୀମାନେ କୃପଣ । ଏକାବେଳେ ଟଙ୍କାଟିଏ ଲେଖାଏଁ ଭିକ ଦେବା ତାଙ୍କ ପକ୍ଷେ ଅସମ୍ଭବ । ହୁଏତ ଲୋକଟି ଆମର ଟଙ୍କା ଚୋରି କରିଥିବାରୁ ସେ ଅକାତରରେ ଆମକୁ ଦାନ କରୁଛି ।" କିନ୍ତୁ କ'ଣ କରାଯିବ ? ସେଇଟା ଥିଲା ସେମାନଙ୍କର ଚିନ୍ତା ।

ପ୍ରଥମ ଜଣକ କହିଲା - "ମୋ ପଇସାରୁ ମୁଁ କିଛି ଖାଦ୍ୟ କିଣେ ନାହିଁ । ଏଇଟା ମୋର ପ୍ରକୃତି । ଏଇ ଟଙ୍କାରେ କିଛି ଖାଦ୍ୟ କିଣାଯାଉ । ଯଦି ମୁଁ ତାକୁ ଅନାୟାସରେ ଖାଇଦେବି ତାହାହେଲେ ଏ ଟଙ୍କାରେ ମୋର କିଛି ଅଂଶ ନାହିଁ । ଟଙ୍କାଟି ଦୋକାନୀର । ସେ ଭଦ୍ର ଆଉ ପରମଦୟାଳୁ ବୋଲି ଧରିନେବା । ମୁଁ ଖାଇଲେ, ଯଦି ତଣ୍ଟିରେ ଲାଗିବ, ଏ ଆମ ଟଙ୍କା । ଚୋରି ଧନ । ଏଥିରେ ସଂଦେହ ଆଉ ରହିବ ନାହିଁ ।"

ସେମାନେ ଯାଇ ସେଇ ଟଙ୍କାରେ ରୁଟି ଅଙ୍ଗୁର କିଣିଲେ । ଖାଇବାକୁ ଆରମ୍ଭ କଲେ । ତାପରେ ପ୍ରଥମଅଂଧ ଖାଇବାକୁ ଆରମ୍ଭ କଲା । ରୁଟି ଖାଇବାରୁ ପ୍ରଥମ ଅଂଧର ତଣ୍ଟିରେ ଲାଗିଲା । ସେମାନେ ସେଇଠୁ ତାକୁ ଅଙ୍ଗୁର ଖାଇବାକୁ ଦେଲେ । ସେ ବି ତାକୁ ଖାଇ ପାରିଲା ନାହିଁ । ବର୍ତ୍ତମାନ ସେମାନେ ନିଶ୍ଚିତ ଯେ ଦୋକାନୀଟି ତାଙ୍କ ଟଙ୍କା ଚୋରି କରି ନେଇଛି ।

ସେମାନେ ଦୋକାନୀ ପାଖକୁ ଯାଇ ''ଆମ ଟଙ୍କା ଫେରାଅ'' ବୋଲି ଚିତ୍କାର କଲେ । ସେମାନଙ୍କ ଚିତ୍କାର ଶୁଣି ଲୋକେ ଜମା ହୋଇଗଲେ । ସେମାନେ ଦୋକାନୀ ଓ ଅଂଧମାନଙ୍କ ଠାରୁ ସେମାନଙ୍କ କଥା ଶୁଣିଲେ । ନିଷ୍ପତ୍ତି କିଛି କରିପାରିଲେ ନାହିଁ । ଇତ୍ୟବସରରେ ପୋଲିସ ଆସିଯାଇଥିଲା । ସେ ଦୋକାନୀ ଓ ଅଂଧମାନଙ୍କୁ ଥାନାକୁ ନେଇଗଲା ।

ଅଂଧମାନଙ୍କୁ ପୋଲିସ ପଚାରିଲା - "ତୁମେମାନେ କିପରି ଜଣିଲ ଯେ ଏ ଦୋକାନୀ ତୁମମାନଙ୍କର ପଇସା ଚୋରି କରିଛି ?"

ସେମାନଙ୍କର ପଇସାସବୁ କିପରି ଚୋରି ଯାଇଥିଲା, ସେ କଥା ସେମାନେ ବର୍ଣ୍ଣନା କଲେ । ପ୍ରଥମ ଅଂଧ ତାପରେ କହିଲା - "ମୁଁ ସବୁବେଳେ ପରଠାରୁ

ମାଗି ଖାଏ । ମୋ ପଇସାରୁ ଖାଦ୍ୟ କିଣି ଖାଇପାରେ ନାହିଁ । ଖାଇଲେ ତଣ୍ଟିରେ ଲାଗେ । ଦୋକାନିଟି ଟଙ୍କାଟିଏ ଦାନ କଲା । ସେ ଟଙ୍କାରେ ଆମେ ରୁଟି ଓ ଅଙ୍ଗୁର କିଣିଲୁ । ମୁଁ ରୁଟି ଓ ଅଙ୍ଗୁର ଯାହା ଖାଇଲି ତା ମୋ ତଣ୍ଟିରେ ଲାଗିଲା । ତେଣୁ ସେଥିରୁ ଜାଣିଲି ଯେ ଟଙ୍କାଟି ଆମର । ଦୋକାନୀ ଏହାକୁ ଚୋରି କରି ନେଇଛି ।”

ଦୋକାନୀଟି କହିଲା - “ଏ ଅଂଧ ମାନଙ୍କର କଥାରେ ମିଛ କିଛି ନାହିଁ । କିନ୍ତୁ କେଉଁ ଅବସ୍ଥାରେ ସେମାନଙ୍କର ଟଙ୍କା ମୁଁ ଚୋରି କଲି ସେ କଥା ଶୁଣ । ଦିନେ ଏଇ ଅଂଧ ଭିତରୁ ଜଣେ ମୋ ଦୋକାନକୁ ଆସିଥିଲା । ସେ ଭିକ ମାଗିଲା । ମୁଁ ଟଙ୍କାଟିଏ ଦେଇ ରେଜା ମାଗିଲି । ଅଂଧ ତ ରେଜା ଦେଲା ନାହିଁ, ବରଂ ଟଙ୍କାଟି ନେଇ ପଳାଇଲା । ମୁଁ ତା ପିଛା ଧରି ତାକୁ ରେଜା ମାଗିବାରୁ ସେ ପାଟିକଲା । ଲୋକେ ଜମା ହୋଇଗଲେ ମୋ କଥା ଶୁଣି ଲୋକେ ଓଲଟା ବୁଝିଲେ । ମୋତେ ବିଶ୍ୱାସ କଲେ ନାହିଁ । ଫଳରେ ମିଛ କହି ଅଂଧଟି ମୋ ଟଙ୍କା ନେଇ ଚାଲିଗଲା । ମୁଁ ତା ପଛେ ପଛେ ଗଲି । ସେମାନେ ଟଙ୍କା ଯେଉଁଠାରେ ରଖନ୍ତି ତା ବି ଜାଣିଲି । ସେ ସବୁ ଟଙ୍କା ନେଇ ଆସିଲି ।”

ପୋଲିସ ଆଦେଶ ବଳରେ ଦୋକାନୀଟି ଅଂଧକୁ ସେମାନଙ୍କ ଟଙ୍କା ଦେଇଦେଲା ।



# ଧନୀ ଭିକାରି ଓ ତାର ଗାଞ୍ଜିଆ

ଚାଷିଟି ଭାରି ଗରିବ । ସେଦିନ ସେ କାମ କରିକରି ବିଲରୁ ଘରକୁ ଫେରିଲା । ସେତେବେଳକୁ ସେ ଖୁବ୍ ହାଲିଆ । କ୍ଳାନ୍ତ । ଅବସନ୍ନ । ଦେହ ହାତ ତାର ଜମା ଚଳୁନଥାଏ । ଦି’ଟା ଖାଇଦେଇ ସେ ବିଛଣାରେ ଲମ୍ବ ହୋଇଗଲା । ସେଇ ଅବସ୍ଥାରେ ସେ ଭଗବାନଙ୍କୁ ତୁହାଇ ତୁହାଇ ଡ଼ାକି କହୁଥାଏ, “ହେ ଭଗବାନ, ମୋତେ ଏପରି ଦରିଦ୍ର କାହିଁକି କଲୀ ? ଟିକେ ଦୟା କର । ଖର୍ଚ୍ଚ କରିବା ପାଇଁ ଧନ ସମ୍ପତ୍ତି କିଛି ମୋତେ ଦିଅ ।” ତାହାର ବିକଳ ପ୍ରାର୍ଥନା ଭଗବାନ ସମ୍ଭବ ଶୁଣିଲେ । ସେ ଦେଖିଲା ଯେ ଗୋଡ଼ ପାଖରେ ତାର ଗାଞ୍ଜିଆଟିଏ

ପଡ଼ିଛି । ସେ ତାକୁ ଉଠାଇଲା ବେଳକୁ ଦୈବ ବାଣି ଶୁଣିଲା - "ଏଇ ଗାଞ୍ଜିଆରେ ଗୋଟିଏ ଟଙ୍କା ଅଛି । ତୁ ସେଇଟା ବାହାର କରିନେଲେ, ପୁଣି ଟଙ୍କାଟିଏ ଥିବ । ଯେତେଥର ତୁ ବାହାର କରିଲେ ବି ଏହା ଶୂନ୍ୟ ହେବନାହିଁ । କିଛି ଟଙ୍କା ସଂଗ୍ରହ କରି ସାରିଲା ପରେ ଏହାକୁ ନଈରେ ପକାଇ ଦେବୁ । ସେଠି ଗାଞ୍ଜିଆ ମାଛ ହୋଇଯିବ । ତା ଭିତରେ ଥିବା ମୁଦ୍ରା, ସେ ମାଛର ଡ଼େଣା ହୋଇଯିବ ।"

ଚାଷିଟି ଭାରି ଖୁସି । ସେ ରାତିସାରା ଓ ତା ପରଦିନ ସେ ଗାଞ୍ଜିଆରୁ ଗୋଟିକ ପରେ ଗୋଟିଏ ଲେଖାଏଁ ମୁଦ୍ରା ବାହାର କଲା । ସେତେବେଳକୁ କେତୋଟି ଅଖା ତାର ମୁଦ୍ରାରେ ପୂର୍ଣ୍ଣ ହୋଇସାରିଥିଲା । ତଥାପି ତାର ଆଗ୍ରହ କମିଲା ନାହିଁ । ତାର ପରଦିନ ମଧ୍ୟ ଟଙ୍କା ବାହାର କରିବାରେ ସେ ଲାଗିପଡ଼ିଲା । କେତୋଟି ଅଖା ପୁଣି ମୁଦ୍ରାରେ ପୂର୍ଣ୍ଣ କଲା । ଦୁଇଦିନ ଦୁଇରାତି ସେ ଖାଇନାହିଁ, ପେଟରେ ଖୁବ୍ ଭୋକ । ସେ ଆଉ ସମ୍ଭାଳି ପାରିଲା ନାହିଁ । ଅଖାରେ ଥିବା ମୁଦ୍ରାରୁ ଖର୍ଚ୍ଚ କରିବାକୁ ତାର ସାହସ ପାଇଲା ନାହିଁ । ଖର୍ଚ୍ଚ କଲେ, ତାହା କମିଯିବ । ଏଇ ଭୟ ତାକୁ ଗ୍ରାସ କଲା । ସେ ପଡ଼ିଶା ଘରକୁ ଗଲା, ମାଗିକରି କିଛି ଖାଦ୍ୟ ଆଣି ଖାଇଲା । ପୁଣି ଟଙ୍କା ଗାଞ୍ଜିଆରୁ ବାହାର କରିବାରେ ଲାଗିପଡ଼ିଲା । ସେ ସେଠୁ ଉଠେ ନାହିଁ । ନିଦ ଖୁବ୍ ଆସିଲେ ସେଇଠି ସେ ଗଡ଼ିପଡ଼େ । ପୁଣି ଉଠି ପଇସା ବାହାର କରେ ।

ଭୋକ ହେଲେ, ପଇସାକୁ ଅନାଏ । ତାକୁ ଦେଖି ତାର ତୃପ୍ତି ଆସେ । ଆନନ୍ଦ ମିଳେ । ସେଥିରେ ହାତ ଦେବାକୁ ତାର ଜମା ଇଚ୍ଛା ହୁଏନାହିଁ । ବାହାରକୁ ଯାଏ । ଭିକ ମାଗେ । ସେଥିରେ ଯାହା ମିଳେ ଖାଇଦେଇ ଧାଇଁଆସେ ଘରକୁ ତାର । ସେଠି ପୁଣି ପଇସା ବାହାର କରେ । ଘର ସବୁ ଟଙ୍କାରେ ପୂର୍ଣ୍ଣ ହୋଇଗଲା । ଦୈବବାଣୀ ମନେ ପଡ଼େ । ଗାଞ୍ଜିଆକୁ ପକାଇବାକୁ ନଈ କୂଳକୁ ଯାଏ । ସେଠି ଠିଆହୋଇ ଭାବେ । ଗାଞ୍ଜିଆ ପକାଇଦେଲେ, ଆଉ ଟଙ୍କା ମିଳିବ ନାହିଁ । ଆଉ ଥରୁଟିଏ ଟଙ୍କା ରଖି ଗାଞ୍ଜିଆକୁ ନଈରେ ପକାଇ ଦେବ । ନଈ କୂଳରୁ ପୁଣି ଫେରିଆସେ ସେ ଘରକୁ । ସେଠି ପୁଣି ଗାଞ୍ଜିଆ ଭିତରୁ ଟଙ୍କା ବାହାର କରିବାକୁ ଲାଗିପଡ଼େ ।

କେତେ ବାର ଯେ ସେ ନଈ କୂଳକୁ ଯାଇଛି, ତା କହିହେବ ନାହିଁ । କିନ୍ତୁ ଲୋଭରେ ଗାଞ୍ଜିଆକୁ ସେ ନଈକୁ ପକାଇ ପାରିନାହିଁ । ଫେରିଆସି ପୁଣି ଟଙ୍କା ବାହାର କରିବାରେ ଲାଗିଯାଇଛି ।

ମାଗିକରି ଖାଇଲେ ପେଟ ପୂରେନାହିଁ । ତା'ର ବେଳା ଅବେଳା କିଛି ନାହିଁ । ମନଦେଇ କରି ଖାଇବା ପ୍ରଶ୍ନ ଉଠୁଛି କେଉଁଠି ? ନିଜ ସ୍ୱାସ୍ଥ୍ୟର ଯତ୍ନ ସେ ନେଲା ନାହିଁ । ଗାଞ୍ଜିଆରୁ ଟଙ୍କା ବାହାର କରିବା ନିଶାରେ ସେ ପାଗଳ ହୋଇଗଲା । ତାର ବଞ୍ଚିବା ସମୟ ବି କମି ଆସିଲା । ସେ ଅସୁସ୍ଥ ହୋଇପଡ଼ିଲା । ବିଛଣାରୁ ଉଠିବା ତା ପକ୍ଷେ କଷ୍ଟ ହେଲା । କିନ୍ତୁ ସେ ଗାଞ୍ଜିଆରୁ ଟଙ୍କା ବାହାର କରିବା ଛାଡୁ ନଥିଲା । ସେଥିରୁ ଖର୍ଚ୍ଚ କରି ତାର ଖାଦ୍ୟ ଓ ଔଷଧ କିଣୁ ବି ନଥିଲା ।

ସେମିତି ପଡ଼ିପଡ଼ି ଦିନେ ସେ ମରିଗଲା । ମଲା ବେଳକୁ ସେ ଖୁବ୍ ଧନୀ ହୋଇଯାଇଥିଲା । ଘର ବାହାର ସବୁଠି ଟଙ୍କାର ଗଦା କିନ୍ତୁ ଘର ଚାରିକଣ ଓଳାଇଲେ ବି ପୋଷେ ଖାଦ୍ୟ ଶସ୍ୟ ନଥିଲା । ଭଗବାନ ତାକୁ ଧନ ଦେଲେ । କିନ୍ତୁ ଶାନ୍ତି ତାଠାରୁ ଛଡ଼ାଇ ନେଲେ । ଧନ ପାଇଁ ପାଗଳ ହେଇଗଲା । ଶାନ୍ତି କ'ଣ ଜୀବନରେ ସେ କିଛି ଜାଣିପାରିଲା ନାହିଁ ।



# କଙ୍କିଚୁରା, ଥାଳି ଓ ବାଡ଼ି

କାଠୁରିଆ ଟିଏ । ସେ ଭାରି ଗରିବ । ଘରେ ତାର ସ୍ତ୍ରୀ ଓ ସାତ ଝିଅ । ସେମାନଙ୍କୁ ଚଳାଇବା ପାଇଁ ତାକୁ ଖୁବ୍ ପରିଶ୍ରମ କରିବାକୁ ପଡ଼େ । ସକାଳୁ ସକାଳୁ ସେ ଜଙ୍ଗଲକୁ ଚାଲିଯାଏ କାଠ କାଟେ । ତାକୁ ଆଣି ବଜାରରେ ବିକେ । ଯାହା ମିଳେ, ସେଥିରେ ସେମାନଙ୍କର ପେଟ ପୁରିବାକୁ ନଅଣ୍ଟ । ଯାହା ହେଉ ଯାହା କିଛି ଖାଇପିଇ ସେମାନେ ବଂଚି ଯାଆନ୍ତି ।

ଦିନକର କଥା । ଗୋଟିଏ ଗଛ ଉପରେ କୁରାଢ଼ୀ ଲଗାଇଛି ନାଁ ନାହିଁ, ସେ ଜଣେ ଲୋକକୁ ଦେଖିଲା । ସେ ଲୋକଟି ଗଛ ପାଖରେ ଠିଆ ହୋଇଥିଲା । ସେ ଦେଖିବାକୁ ତ୍ରିପଣ୍ଡ କଳା । ଠିକ୍ ଜଣେ ନିଗ୍ରୋ ପରି ।

ସେ ନିଗ୍ରୋ ଲୋକଟି କହିଲା - "ତୁ ପ୍ରତିଦିନ ମୋର ମୁଣ୍ଡ କାହିଁକି କାଟୁଛୁ ?"

କାଠୁରିଆ ଉତ୍ତର ଦେଲା - "ମହାଶୟ, ମୋର ସାତ ପ୍ରାଣୀ କୁଟୁମ୍ବ । ସେମାନଙ୍କ ମୁହଁରେ ଆହାର ଦେବା ମୋର କର୍ତ୍ତବ୍ୟ । ମୁଁ କାଠ କାଟି ତାଙ୍କ ତୁଣ୍ଡରେ ଦାନା ଦିଏ । କାଠ ନ କାଟିଲେ, ମୁଁ ତାଙ୍କୁ ବଂଚାଇ ପାରିବି ନାହିଁ ।" କାଠୁରିଆର କଥା ନମ୍ର । କାରୁଣ୍ୟ । ହୃଦୟ ସ୍ପର୍ଶୀ ।

କାଠୁରିଆ କଥା ଶୁଣି ନିଗ୍ରୋଟିର ହୃଦୟ ତରଳିଗଲା । ସେ କହିଲା "ମୁଁ ତମକୁ କଫିଚୁରାଟିଏ ଦେଉଛି । ଏହାକୁ ନେଇଯାଅ । ଯେତେ ତୁମର ଖାଦ୍ୟ ଦରକାର, ଏହାକୁ ମାଗିଲେ, ଏହା ତୁମକୁ ଯୋଗାଇ ଦେବ । କିନ୍ତୁ ତୁମେ କଥା ଦିଅ, ଏଠାକୁ ତୁମେ ଆଉ ଜମା କାଠ କାଟିବାକୁ ଆସିବ ନାହିଁ ।

କାଠୁରିଆଟି ଏକଥା ଶୁଣି ଆନନ୍ଦରେ ପାଗଳ । ସେ ଧାଇଁ ଧାଇଁ ଆସି ନିଗ୍ରୋଟିକୁ କୁଣ୍ଢାଇ ପକାଇଲା । ତାପରେ ନିଗ୍ରୋକୁ କେତେ ନା କେତେ ପ୍ରଶଂସା କଲା ଆଉ କୃତଜ୍ଞତା ଜଣାଇଲା । ତାପରେ ସେ ଗଛ କାଟିବା ଯନ୍ତ୍ରପାତି ଓ କଫିଚୁରା ଧରି ଘରକୁ ଫେରିଲା । ବାଟରେ ତାକୁ ଭୋକ କଲା । କଫିଚୁରାକୁ ପରୀକ୍ଷା କରିବାକୁ ତାର ତ ଭାରି ଇଚ୍ଛା । ସେଥିପାଇଁ ଗୋଟିଏ ଗଛମୂଳେ ସେ ବସି କଫିଚୁରାକୁ କହିଲା-"ମୋତେ ଭାତ ମାଂସ ଓ ରୋଟି ଦେ ।" ଏହା କହି ସେ ଆଖି ବୁଜିଲା । ଟିକିଏ ପରେ ଯେତେବେଳେ ସେ ଆଖି ଖୋଲିଲା, ସେ ଦେଖିଲା - ଆଗରେ ତାର ଦିବ୍ୟ ଭୋଜନ ଥୁଆହୋଇଛି । ସେତକ ସେ ଖାଇଦେଇ ଟିକିଏ ବିଶ୍ରାମ ନେଲା । ତାପରେ ପୁଣି ଘରକୁ ବାହାରିଲା ।

ସେ ତ ଖୁବ୍ ଖୁସି । ଗୋଡ଼ ତାର ତଳେ ଲାଗୁନଥାଏ । ଘରେ ପହଞ୍ଚି ଏହା ନିମିଷକେ, ସେ ସମୁଦାୟ କଥା ତା ସ୍ତ୍ରୀ ଓ ପିଲାମାନଙ୍କ ଆଗରେ କହିଦେଲା । ଏକଥା ଶୁଣି ତାର ସ୍ତ୍ରୀ ଓ ପିଲାମାନଙ୍କର ଆନନ୍ଦ କହିଲେ ନସରେ । ତାଙ୍କର ଖାଇବାର ତାଙ୍କର ଚିନ୍ତା ଯେ ଚାଲିଗଲା ସେଥିପାଇଁ ସେମାନେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଜଣାଇଲେ । ଏହା ଭଗବାନଙ୍କ ଦୟା ଓ କରୁଣା । ଏଥିରେ ସେମାନଙ୍କର ସଂଦେହ ନଥିଲା । କାଠୁରୀଆଟି କଫିଚୁରାକୁ ତାର ସ୍ତ୍ରୀ ଓ ପିଲାମାନଙ୍କ ପାଇଁ ଖାଦ୍ୟ ମାଗିଲା । ଯାହା ଖାଦ୍ୟ ମିଳିଲା ତାହା ତାଙ୍କ ପାଇଁ ଯଥେଷ୍ଟ । ସେମାନେ

ଆନନ୍ଦରେ ତାକୁ ସବୁ ଖାଇଲେ । କାଠୁରିଆ ଘର ପାଖକୁ ଗୋଟିଏ ବୁଢ଼ୀର ଘର । ସେ କାଠୁରିଆ ଘରକୁ ଯା ଆସ କରେ । ସେ ଦେଖିଲା ଯେ ସପ୍ତାହଟିଏ ଚାଲିଗଲାଣି । ସେମାନେ ବଢ଼ିଆ ଖାଦ୍ୟ ଖାଇ ସୁ ସା ହେଉଛନ୍ତି । କାଠୁରିଆ କାମକୁ ଯାଉ ନାହିଁ । ଅଥଚ ଅଭାବ ସେମାନଙ୍କର କିଛି ନାହିଁ । ବୁଢ଼ୀଟି ମନରେ ସଂଦେହ । କ'ଣ ପାଇଁ କାଠୁରିଆ ଆଜି ଭଲରେ ଅଛି, ତାହା ଜାଣିବାକୁ ବୁଢ଼ୀର ଭାରି ଆଗ୍ରହ ।

ଦିନେ ସେ କାଠୁରିଆ ଘରକୁ ଆସିଲା । ସେମାନଙ୍କର ଭଲ ମନ୍ଦ ପଚାରି ବୁଝିଲା । କାଠୁରିଆର ଘରେ ତ ପିଲାମାନେ ଭୋକ ଉପାସରେ ସଢୁଥିଲେ । ଏଭଳି ଖାଇ ପି ଆନନ୍ଦରେ ଅଛନ୍ତି । ସେଇଟା ତାଙ୍କର ଗର୍ବ । ସେଥିପାଇଁ ବାହାଦୂରୀ ଦେଖାଇ ଝିଅଟିଏ କହିଲା - "ମାଉସୀ, ଆମର ଗୋଟିଏ କଫିଚୁରା ଅଛି, ତାକୁ ଯାହା ଖାଇବାକୁ ମାଗିବ, ତା ସେ ଦେଇଦେବ । ଏଥର ଆମେ ତାହାଠୁ ମାଗିକରି ଖାଉଛୁ । ଘରେ ରାନ୍ଧୁ ନାହୁଁ ।"

ବୁଢ଼ୀଟି ତ ପକ୍କା ବଦମାସ । କିମିତି ଏ କଫିଚୁରା ଆୟତ କରିବ, ସେଇଟା ତାର ମତଲବ ।

ଦିନେ ସମସ୍ତେ ଘରୁ କୁଆଡ଼େ ଯାଇଥାନ୍ତି । କେବଳ ଗୋଟିଏ ଝିଅ ଘରେ ଥାଏ । ବୁଢ଼ୀଟିଏ ଏ ସୁବିଧା ଦେଖି କାଠୁରିଆ ଘରକୁ ଆସିଲା । ଝିଅଟିକୁ ଗେଲେହି କରି କହିଲା - "ମାଲୋ, ମୋର କଫିଚୁରା ନାହିଁ । ଟିକିଏ ତମର କଫିଚୁରା ଦିଅନ୍ତ କି ମୁଁ ମୋର କାମସାରି ଫେରାଇ ଦେବି ।"

ଗାଁରେ ତ ଜିନିଷ ଦବାନବା ଚାଲେ । ଝିଅଟି ବା କାହିଁକି ସଂଦେହ କରିବ ? ବୁଢ଼ୀଟିକୁ ସେ କଫିଚୁରାଟା ଦେଇଦେଲା ।

ବୁଢ଼ୀ କାଠୁରିଆର ଯେମିତି କଫିଚୁରା ସେମିତି କଫୁଚୁରାଟିଏ କିଛି ସମୟରେ ଫେରାଇ ଦେଲା । କାଠୁରିଆ ଝିଅ ତାକୁ ନେଇ ରଖିଦେଲା ।

କାଠୁରିଆ ସଂଧ୍ୟାକୁ ଘରକୁ ଫେରି ଖାଇବାକୁ କଫିଚୁରାକୁ ମାଗିଲା । ସେ କଫିଚୁରା ସେମିତି ପଡ଼ି ରହିଲା । ଥରେ ନୁହେଁ, ବହୁବାର ଖାଦ୍ୟ ପାଇଁ କାଠୁରିଆର ନିବେଦନ ଥିଲା । ସବୁ ଏଥର ବୃଥା । ତେଣୁ ସେ ଘରେ କଫିଚୁରା ସାଥିରେ କିଏ ଲାଗିଥିବାର ପଚାରିଲା । ଝିଅଟି, ତା'ର ବୁଢ଼ୀକୁ କଫିଚୁରାକୁ କିଛି

ସମୟ ପାଇଁ ଦେଇଥିବାର ପ୍ରକାଶ କଲା । କାଠୁରିଆ ବୁଢ଼ୀକୁ ପଚାରିବାରୁ ବୁଢ଼ୀ କହିଲା- "ପୁଅରେ ମୁଁ ତ କଫିଚୁରା ଫେରାଇ ଦେଇଛି । ସେ କାହିଁକି କାମ କରୁନି, ମୁଁ କିମିତି ଜାଣିବି ?" କାଠୁରିଆ ଘରକୁ ଫେରି ଆସିଲା । ମନକଷ୍ଟରେ ଝିଅକୁ ଦୁଇ ଚାରି ଚଟକଣି ଦେଲା । ଯାହା ଘରେ କିଛି ଥିଲା ସେଥିରେ ସେ ରାତିଟି ମାରିଲେ । ପରଦିନ ସକାଳୁ ଘରେ କିଛି ଖାଇବାକୁ ଆଉ ନଥିଲା । କାଠୁରିଆଟି କାଠହାଣିବା ପାଇଁ ପୁଣି ଜଙ୍ଗଲକୁ ଗଲା । ସେଠି କାଠ ହାଣିବାକୁ ଯାଉଛି, ପୁଣି ନିଗ୍ରୋ ଆସି ତା ପାଖେ ହାଜର । ସେ କହିଲା -''ତୋର ଖାଦ୍ୟ ସମସ୍ୟା ସମାଧାନ ପାଇଁ କଳଟିଏ ଦେଲି । ତୁ ଆସିବୁନି ବୋଲି ଜବାବ ଦେଇଥିଲୁ । ପୁଣି ଆଜି କାହିଁକି ଆସିଲୁ ?''

କାଠୁରିଆ କହିଲା - ''ମହାଶୟ, ବୁଢ଼ୀଟିଏ ମୋର ପଡ଼ୋଶୀ । ମୁଁ ନଥିଲାବେଳେ ଆପଣ ଦେଇଥିବା କଳକୁ ବୁଢ଼ୀଟି ମୋ ଝିଅକୁ ଶିଖାଇ ନେଇଗଲା । ମୁଁ ପୁଣି କାଠ ହାଣିବାକୁ ଆସିଲି । ନଇଲେ ପିଲାଛୁଆ ମୋର ମରିଯିବେ ।''

ନିଗ୍ରୋଟି ଟିକିଏ ଭାବିଲା । ତା ପରେ କହିଲା - ''ମୁଁ ତୋତେ ଦ୍ୱିତୀୟ ବାର ସୁବିଧା ଦେଉଛି । ଏଥର ଏଇ ଥାଳିଟି ନେ । ତୋର ଯେତେ ପଇସା ଦରକାର କରିବୁ ତୋତେ ମିଳିଯିବ । କିନ୍ତୁ ଗୋଟିଏ କଥା । ତୋର ଦରକାର ନଥିଲେ, ଏହାକୁ ମାଗିଲେ, ଏ ପଇସା ଦେବନାହିଁ । କେବେହେଲେ ଏଠାକୁ ଆସିବୁ ନାହିଁ ।''

କାଠୁରିଆ ମୁଣ୍ଡହଲାଇ ସମ୍ମତି ଜଣାଇଲା । କାଠୁରିଆ ମନ ପୁଣି ଆନନ୍ଦରେ ଭରିଗଲା । ସେ ନିଗ୍ରୋଟିକୁ ଧନ୍ୟବାଦ ଜଣାଇ ପୁଣି ଘରକୁ ନେଉଟିଲା । ବାଟରେ ଥାଳିକୁ ପରୀକ୍ଷା ପାଇଁ କହିଲା - ''ହେ ଥାଳି, ହେ ଥାଳି ମୋତେ କିଛି ପଇସା ଦେ । ପାଟିରୁ କଥା ସରିନାହିଁ, ଟଙ୍କା ପଇସାରେ ଥାଳିଟି ପୂର୍ଣ୍ଣ ହୋଇଗଲା । ସେ ପୁଣି ଘରେ ପହଞ୍ଚି ସ୍ତ୍ରୀ ଓ ପିଲାଙ୍କୁ ବସାଇ ସବୁ କଥା ବୟାନ କଲା । ପୁଣି ଥରେ ସେମାନେ ଭଗବାନଙ୍କ ଆର୍ଶିବାଦ ପାଇଁ କୃତଜ୍ଞତା ଜଣାଇଲେ । ତାପରେ କାଠୁରିଆଟି ସ୍ତ୍ରୀ ପିଲାମାନଙ୍କୁ କହିଲା - ''ଆରଥର କଫିଚୁରା ଦେଇ ହଇରାଣ ହେଲି,ଏଥର ଯେମିତି କାହାକୁ ଏଇ ଥାଳି ଦେବନାହିଁ । ସେଥିପାଇଁ ହୁସିଆର ରହିବ ।''

ସୁଖ ଓ ଐଶ୍ୱର୍ଯ୍ୟ ମଧ୍ୟରେ ସେମାନେ ଦିନ କାଟିଲେ । ପଡ଼ିଶା ବୁଢ଼ୀଟି ଏହାର ଲକ୍ଷ୍ୟ କରୁଥିଲା । ଦିନେ ସେ ଆସି ସ୍ତ୍ରୀ ଓ ଝିଅମାନଙ୍କ ସାଥିରେ ଗପ ଜମାଇ ଦେଲା । ସ୍ତ୍ରୀ ଲୋକମାନେ ତ ଗପୁଡ଼ି । ଥରେ ଗପିବାକୁ ବସିଲେ ଗପ ତାଙ୍କରେ ସରେ ନାହିଁ । ସବୁକଥା କହିଦିଅନ୍ତି । ବୁଢ଼ୀର ଥାଳିର କରାମତି ବିଷୟରେ ଜାଣିବାକୁ ବାକି ରହିଲା ନାହିଁ ।

ବେଳ ଉଣ୍ଡି ସେ ଗୋଟିଏ ଝିଅକୁ ତୋଷାମଦ କରି ଥାଳିକୁ ହାତ କରିନେଲା । ସେଇଦିନ ସଂଧ୍ୟାରେ କାଠୁରିଆ ଜାଣିଲା ଯେ ଥାଳିଟି ପୁଣି ବୁଢ଼ୀ ବଦଳାଇ ଦେଇଛି । ସେ ରାଗରେ ନିଆଁ । ଘରେ ସ୍ତ୍ରୀ ଓ ପିଲାଙ୍କୁ ଖୁବ୍ ପିଟିଲା । ସକାଳୁ କାହାକୁ କିଛି ନ କହି ଚାଲିଲା ଜଙ୍ଗଲକୁ । କାନ୍ଧରେ ତାର କୁରାଢ଼ୀ ।

ସେ ଗଛ କାଟିବାକୁ ପ୍ରସ୍ତୁତ ହେଲାବେଳକୁ ନିଗ୍ରୋଟି ପୁଣି ଆସି ପହଞ୍ଚିଗଲା । ନିଗ୍ରୋ ପଚାରିବା ପୂର୍ବରୁ କାଠୁରିଆଟି ତାକୁ କ୍ଷମା ମାଗି ସବୁ କଥା କହିଲା । ନିଗ୍ରୋ କହିଲା– 'ଦୁଇଥର ସୁଯୋଗ ଦେଲି । ତୁ ହତଭାଗ୍ୟ । ସେ ସବୁ ସୁବିଧା ଭୋଗ କରି ପାରୁନାହୁଁ । ଏଇ ଶେଷଥର ବାଡ଼ିଟିଏ ଦେଉଛି । ଯଦି ଲୁଗା ନ ପିନ୍ଧିଥିବା ଲୋକ ପାଖରେ ଏ ବାଡ଼ି ରହିବ, ତାକୁ ସେ ପିଟି ଚାଲିବ । ଯେତେବେଳେ ବାଡ଼ିକୁ କୁହାଯିବ 'ହେଲା', ସେ ପିଟିବା ବନ୍ଦ କରିଦେବ । ତୁ ଆଗ ମାଡ଼ ଖାଇବୁ । ତୋ ପିଲା ଓ ସ୍ତ୍ରୀଙ୍କୁ ମାଡ଼ ଖୁଆଇବୁ । ତାପରେ ବୁଢ଼ୀକୁ ବି ବାଡ଼ି ଦେବୁ ।''

ବାଡ଼ିକୁ ହାତରେ ଧରି କାଠୁରିଆଟି ନିଗ୍ରୋକୁ ନମସ୍କାର କଲା ତାପରେ କହିଲା – ''ଏଥର ଜବାବ ଦେଉଛି, ଆଉ କେବେ ହେଲେ କାଠ କାଟିବାକୁ ଜଙ୍ଗଲକୁ ଆସିବି ନାହିଁ ।'' ତା ପରେ ଘରକୁ ଫେରିଲା ।

ଘରେ ସେ ତାର ଲୁଗା ଦେହରୁ ବାହାର କରି ତା ଉପରେ ମାଡ଼ ଆରମ୍ଭ ହୋଇଗଲା । ସେତ ପ୍ରସ୍ତୁତ ନଥିଲା, ହଡ଼ବଡ଼େଇ ଗଲା । ନିଗ୍ରୋର କଥା ମନେ ପଡ଼ିବାରୁ ସେ କହିଲା 'ହେଲା' । ସାଥି ସାଥି ବାଡ଼ିଟି ପିଟିବା ବନ୍ଦ କରିଦେଲା । ତା ପରେ ସେ ତାର ସ୍ତ୍ରୀ ଓ ପିଲାମାନଙ୍କୁ କହିଲା – ''ଏ ବାଡ଼ିଟିର

ଗୁଣ ଅଦ୍ଭୁତ । ତୁମେ ଜଣ ଜଣ ହୋଇ ଘରେ ପଶ । ବାଡ଼ିଟିକୁ ସାଥିରେ ନିଅ । ଘରେ ଦେହରୁ ଲୁଗା ବାହାର କରିଦେବ । ଦେଖିବ କଣ ହେଉଛି ?''

ସ୍ତ୍ରୀ ଓ ଝିଅମାନେ ଏକଥା ଶୁଣି ଭାରି ଖୁସି । ଜଣକ ପରେ ଜଣେ ବାଡ଼ିକୁ ନେଇ ଘରେ ପଶିଲେ । ଲୁଗା ବାହାର କଲା ମାତ୍ରେ ପିଟିବା ଆରମ୍ଭ ହୋଇଯାଏ । କାଠୁରିଆଟି ହ, 'ହେଲା' କହିଲେ, ପିଟିବା ବନ୍ଦ ହୁଏ ।

ବୁଢ଼ୀର ମନ ଲାଗିଛି । ସେ ଭାବିଲା - ''କାଠୁରିଆ ପୁଣି ନୂଆ ଜିନିଷ ଆଣିଥିବ । ତାକୁ ଯେମିତି ହେଲେ ସେ ହାତ କରିବ । ସେ ପରଦିନ କାଠୁରିଆ ଘରକୁ ଆସିଲା । ସେ କାଠୁରିଆର ସ୍ତ୍ରୀ ଓ ଝିଅମାନଙ୍କ ସାଥିରେ ଗପ ଜମାଇଦେଲା । ସେମାନେ କହିଲେ -'' ଏଥର ଗୋଟିଏ ବାଡ଼ି ଆସିଛି । ତାର ଗୁଣ ଅଦ୍ଭୁତ ।''

ବୁଢ଼ୀଟି କହିଲା - ''ଏ ବାଡ଼ିଟି ମୋତେ ଟିକିଏ ଦିଅନ୍ତ ନାହିଁ ?''

କାଠୁରିଆ ସ୍ତ୍ରୀ କହିଲା - ''ପରେ କାହିଁକି ନେବ ? ଏଇନେ ନେଇଯାଅ ।''

ବୁଢ଼ୀଟି ବାଡ଼ିଟି ନେଇ ଘରକୁ ଗଲା । ସେ ଯେମିତି ଦେହରୁ ଲୁଗା ବାହାର କରିଛି ବାଡ଼ି ତାର କାମ ଆରମ୍ଭ କରିଦେଲା । 'ହେଲା' କହିବାକୁ ହେବ, ସେ କଥା ବୁଢ଼ୀ ଜାଣି ନଥିଲା । ତେଣୁ ବାଡ଼ିର ପିଟା ବନ୍ଦ ହେଲା ନାହିଁ । ଶେଷରେ ବୁଢ଼ୀ ତଳେ ପଡ଼ି ମରିଗଲା, ତଥାପି ବାଡ଼ିର ପିଟା ଚାଲିଥାଏ ।

ସନ୍ଧ୍ୟା ବେଳକୁ କାଠୁରିଆ ଘରକୁ ଫେରିଲା । ବାଡ଼ି କଥା ପଚାରିଲା । ସ୍ତ୍ରୀ ତାର କହିଲା - ''ବାଡ଼ିଟି ବୁଢ଼ୀ ନେଇ ଯାଇଛି ।''

କାଠୁରିଆର ଭୟ ହେଲା । ସେ ସାଙ୍ଗେ ସାଙ୍ଗେ ବୁଢ଼ୀ ଘରକୁ ଗଲା ବାହାରୁ ବାଡ଼ି ବୁଢ଼ୀକୁ ପିଟୁଥିବା କଥା ଶୁଣି 'ହେଲା' ବୋଲି କହିଲା । ଭିତରୁ ତ କବାଟ ବନ୍ଦ ଥିଲା । କବାଟ ଖୋଲି ଦେଖା ଗଲା - ମାଡ଼ ଖାଇ ଖାଇ ବୁଢ଼ୀଟି ବହୁତ ଆଗରୁ ମରି ଯାଇଛି । କାଠୁରିଆଟି କଫିଚୁରା ଓ ଥାଳି ଧରି ଘରକୁ ଫେରିଲା । ସେମାନେ ସେବେଠାରୁ ଆନନ୍ଦରେ ରହିଲେ ।



# କୃପଣ ଓ ଦାନୀ

ଦୁଇ ବନ୍ଧୁ । ସାଥି ହୋଇ ତେଜରାତି ଦୋକାନଟିଏ କରିଥିଲେ । କେତେବେଳେ ସେଠି କୃପଣ ବସେ ତ କେତେବେଳେ ଦାନୀ ବସେ । କୃପଣଟିର ତ ମନ ଛୋଟ । ବନ୍ଧୁ ତାର କିପରି ଜିନିଷ ବିକୁଛି, ସବୁବେଳେ ସେ ତାକୁ ଲକ୍ଷ୍ୟ କରେ । ସେ ଦେଖେ – ବନ୍ଧୁ ତାର ଜିନିଷ ଦାମ୍ ତ ଠିକ୍ ନିଏ, କିନ୍ତୁ ଗ୍ରାହକକୁ ଓଜନରେ ଟିକିଏ ଗଡ଼ାଇ କରି ସଉଦା ଦିଏ ।

କୃପଣ ମନେ ମନେ ଭାବିଲା – ଯଦି ସମସ୍ତଙ୍କୁ ତାର ସାଙ୍ଗ ଟିକିଏ ଟିକିଏ ଅଧିକା ଜିନିଷ ଦେବ, ତାହା ହେଲେ ଆସ୍ତେ ଆସ୍ତେ ବେଶି ଜିନିଷ ଦିଆ ହୋଇଯିବ । ଫଳରେ ଦୋକାନଟିର ଲାଭ ହେବ ନାହିଁ । କ୍ଷତିରେ ଚାଲିବ । କେତେଦିନ ପରେ ସେମାନେ ଦେବାଳିଆ ହୋଇଯିବେ । ସେ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ । ଦିନେ ସାଙ୍ଗକୁ ତାର କହିଲା –''ଏମିତି ଗଡ଼ାଇ କରି ଜିନିଷ କାହିଁକି ଦେଉଛୁ ? ଟିକିଏ କମାଇ କରି ଦେଉନାହୁଁ ।''

ଦାନୀଟି କହିଲା –''ପରକୁ କମ୍ ଜିନିଷ ଦେବା ଅର୍ଥ ତା ଜିନିଷରୁ କିଛି ରଖି ଦେବା, ତାହା ଧର୍ମତଃ ଚୋରି । ମୁଁ ଚୋରି କରି ପାରିବି ନାହିଁ ।''

କୃପଣ କହିଲା – ''ତୋ ନୀତି ଧରିଲେ, ଆମର ବ୍ୟବସାୟରେ ଲାଭ ହେବ ନାହିଁ । ବରଂ ଉଭୟେ ଦେବାଳିଆ ହୋଇଯିବା ।''

ଦାନୀ ଦେଖିଲା, ତା କଥା କୃପଣ ମନକୁ ପାଉ ନାହିଁ । ଅପଡ଼ ହେବାକୁ ଆଉ ବେଶି ଦିନ ଲାଗିବ ନାହିଁ । ବରଂ ତା ପୂର୍ବରୁ ବାଟ କାଟିବାକୁ ପଡ଼ିବ । ସେଥିପାଇଁ ସେ କହିଲା – ''ଭାଇ ଏଥର ଆସ ଅଲଗା ଅଲଗା ବ୍ୟବସାୟ କରିବା ।''

କୃପଣ ତ ଏହା ଭାବୁଥିଲା । ଦାନୀ କହିବା ମାତ୍ରେ ସେ ରାଜି ହୋଇଗଲା । ଆଲୋଚନା ପରେ ସ୍ଥିର ହେଲା, କୃପଣ ଦୋକାନଟି ପାଇବ । ଦାନୀଟି ତା ପରିବର୍ତ୍ତେ ତା ଭାଗର ମୂଲ୍ୟ ନେଇଯିବ ।

ହାତରେ ଟଙ୍କା ପଡ଼ିବାରୁ ଦାନୀଟି ଭାବିଲା – ଏ ସହରର ଲୋକ ଆତ୍ମସ୍ୱାର୍ଥ ପାଇଁ ବ୍ୟସ୍ତ । କୃପଣ ତାର ଏକ ଉଦାହରଣ । ସେ ଏଠି ନରହି ଆଉ ଗୋଟିଏ ସହରକୁ ଯିବ । ସେଠି ବ୍ୟବସାୟ ଆରମ୍ଭ କରିବ ।

ତାପରେ ଦାନୀଟି ସେ ସହରଟି ଛାଡ଼ି ଚାଲିଗଲା । ଏତ ବହୁଦିନ ତଳର କଥା । ସେତେବେଳେ ରେଳ ଗାଡ଼ି କି ମଟର ନଥିଲା । ଲୋକମାନେ ଚାଲିଚାଲି ଯାଉଥିଲେ । ଦାନୀ ଲୋକଟି ପଦବ୍ରଜରେ ଅନ୍ୟ ସହରକୁ ବାହାରିଲା । ଦିନଯାକ ସେ ଚାଲେ । ରାତି ହେଲେ ଗୋଟିଏ ଖୋଲା ଜାଗାରେ ଶୋଇଯାଏ । ପୁଣି ପରଦିନ ଚାଲିବା ତାର ଆରମ୍ଭ କରିଦିଏ । ଶେଷରେ ସେ ଗୋଟିଏ ସହର ଉପକଣ୍ଠରେ ପହଞ୍ଚିଗଲା । ସେଠି ସନ୍ଧ୍ୟା ହୋଇ ଆସିଥିଲା । ମନେ ମନେ ଭାବିଲା - ସେ ସହରରେ ସଂପୂର୍ଣ୍ଣ ଅଜଣା । ଅଶୁଣା । ତା ଛଡ଼ା ସହର ବିଷୟରେ ତାର କୌଣସି ଧାରଣା ନାହିଁ । ରାତିରେ ସେ ସହରରେ ବୁଲିଲେ, ତାକୁ ଯେ ଯାହା ପଚାରିବ, କୌଣସ ସନ୍ତୋଷଜନକ ଉତ୍ତର ଦେଇ ପାରିବ ନାହିଁ । ଲୋକେ ତାକୁ ଚୋର ତସ୍କର ବୋଲି ଭାବିବେ । ତେଣୁ ବିପଦ ଆପେ ଆପେ ମାଡ଼ି ଆସିବ । ବରଂ ରାତିଟା ଏଇ ଖୋଲା ଜାଗାରେ କଟାଇ ଦେଲେ, ବିପଦ ଆପଦ କିଛି ନାହିଁ । ତେଣୁ ସେଇଠି ସେ ରହିବ ବୋଲି ସ୍ଥିର କଲା । ଶୋଇବା ପାଇଁ ଜାଗାଟିଏ ଖୋଜିଲା । ସେ ଦେଖିଲା ଯେ ଗୋଟିଏ ଖାଲ ଚାରିପଟେ ନଡ଼ା ଗଦା ଦିଆହୋଇଛି । ସେ ଭାବିଲା, ଏଇ ଖାଲରେ ରହିଲେ, କେହି ଜାଣିପାରିବେ ନାହିଁ । ତେଣୁ ଏଇ ଜାଗାଟି ହେଉଛି ସବୁଠାରୁ ସୁବିଧା ଓ ନିରାପଦ ଜାଗା । ସେ ନଡ଼ା ଗଦାରେ ଚଢ଼ି ଆରପଟକୁ ଗଲା । ଖାଲ ଭିତରେ ଶୋଇଗଲା ।

ରାତି ଅଧ । ସବୁଆଡ଼େ ଶୁନ୍‌ଶାନ୍ । ସେ ଦେଖିଲା - ବିଭିନ୍ନ ପଟୁ ଭୂତମାନେ ଆସିଲେ । ସେଠି ରୁଣ୍ଡ ହୋଇ ସଭା କଲେ । ସେଇ ସଭାରେ ଜଣେ ଭୂତ କହିଲା - ''ଏହି ପାଖ ସହରରେ ଜଣେ ରାଜା ଅଛନ୍ତି । ତାଙ୍କ ପୁଅକୁ ଶକ୍ତ ବେମାର । ତାକୁ ଚିକିତ୍ସା କରୁଥିବା ଡ଼ାକ୍ତରମାନେ ତାର ଆଶା ଛାଡ଼ିସାରିଲେଣି । ରାଜା ସେଥିପାଇଁ ଚିନ୍ତିତ ।''

ଅନ୍ୟ ଜଣେ କହିଲା - ''ମୁଁ ତାର ଭଲ ହେବାର ଔଷଧ ଜାଣେ ।'' ଆଉ ଜଣେ ପଚାରିଲା - ''କ'ଣ ସେ ଔଷଧ ?''

ସେଇ ଭୂତଟି ଉତ୍ତର ଦେଲା - ''ଚିକିତ୍ସା ତାର ଅତି ସହଜ । କିଛି ତେଲ ଆଣି ଗରମ କରିବ । ସେ ଗରମ ତେଲକୁ ତା ଦେହରେ ଲଗାଇ ଦେଲେ, ସେ ଉଠି ବସିବ । ସାଙ୍ଗେ ସାଙ୍ଗେ ଆରୋଗ୍ୟ ଲାଭ କରିବ ।''

ଗାତ ଭିତରେ ଥାଇ ଦାନୀ ଲୋକ ସବୁକଥା ଶୁଣୁଥିଲା । ସକାଳ ହେବାରୁ ସେ ସହରକୁ ଗଲା । ସେ ଦେଖିଲା - ସହରଟା ଖାଁ ଖାଁ ଲାଗୁଛି । ସବୁଆଡ଼େ ଶୁନ୍‌ଶାନ୍ । ରାସ୍ତାରେ ଲୋକେ କାଁଭାଁ ଯାଉଛନ୍ତି ଗୋଟିଏ ଗୋଟିଏ ଜାଗାରେ କିଛି ଲୋକ ବସିଥାନ୍ତି । ସମସ୍ତଙ୍କ ମନରେ ଦୁଃଖ । ସମସ୍ତେ ଚିନ୍ତିତ । ବ୍ୟସ୍ତ । ବିବ୍ରତ । ଦାନୀ ଲୋକଟି ଆବଭାବରୁ କିଛି ବୁଝି ପାରିଲା ନାହିଁ । ଜଣେ ଲୋକକୁ ସେ ପଚାରିଲା - ''ଭାଇ ଏ ସହରରେ ଲୋକ ଏପରି ଦୁଃଖିତ କାହିଁକି ? କାହା ପାଟିରୁ କଥା ଟିକିଏ ବାହାରୁ ନାହିଁ କାହିଁକି ?''

ସେ ଲୋକଟି କହିଲା - '' ରାଜାଙ୍କର ଏକମାତ୍ର ପୁଅଙ୍କର ଦେହ ଭାରି ଖରାପ । ବଞ୍ଚିବାର ଆଶା ନାହିଁ । ରାଜା ବଡ଼ ଅବୁଝା । ସେ କହୁଛନ୍ତି, ତାଙ୍କର ପୁଅ ଯଦି ମରିଯାଏ, ତାହାହେଲେ ସେହି ପିଲା ବୟସର ସମସ୍ତ ପିଲାଙ୍କୁ ମାରିଦିଆଯିବ । ତା' ଛଡ଼ା ଯୁବରାଜଙ୍କ ନାମଧାରୀ ଯେତେ ଲୋକ ଥିବେ, ତାଙ୍କୁ ଜୀବନ୍ତ ସମାଧି ଦିଆଯିବ । ସେଥିପାଇଁ ସହରର ସବୁ ଲୋକଙ୍କର ଭାଳେଣି ପଡ଼ିଛି । ପ୍ରତିକାରର ବାଟ କିଛି ନାହିଁ ।''

ଆଗନ୍ତୁକଟି କହିଲା - ''ମୁଁ ପ୍ରତିକାରର ବାଟ ଜାଣିଛି । ସୁବିଧା ମିଳିଲେ, ମୁଁ ସେ ପିଲାକୁ ଭଲ କରିଦେବି ।''

ଏହା ଶୁଣି ସେ ଲୋକଟି ଆଗନ୍ତୁକକୁ ଅଟକାଇ ରଖିଲା । କଥାଟିକୁ ସହର ସାରା ପ୍ରଚାର କରିଦେଲା ।

ସହରର ମୁଖିଆ ଲୋକ କେତେଜଣ ଆଗନ୍ତୁକଙ୍କୁ ରାଜାଙ୍କ ପାଖରେ ହାଜର କରାଇ କହିଲେ - ''ମଣିମା, ଏ ଲୋକଟି ଯୁବରାଜଙ୍କୁ ଭଲ କରିଦେବ । ଏହାକୁ ଯୁବରାଜଙ୍କୁ ଚିକିତ୍ସା କରିବାକୁ ଆଦେଶ ହେଉ ।''

ଏ କଥା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଚାରିଲେ - ''ତୁମେ କ'ଣ ମୋ ପୁଅକୁ ଭଲ କରିପାରିବ ?''

ଦାନୀ ଲୋକଟିର ଉତ୍ତର ଥିଲା ସଂକ୍ଷିପ୍ତ - ''ହଁ ମହାରାଜ ।''

''ତୁମେ ଯଦି ମୋ ପୁଅକୁ ଭଲ କରିଦେବ, ମୁଁ ମୋର ପ୍ରଜାମାନଙ୍କ ମଧ୍ୟରୁ ତମକୁ ସବୁଠାରୁ ଧନୀଲୋକ କରିଦେବି ।'' ଏହା ଥିଲା ରାଜାଙ୍କର ଜବାବ ଓ ଆଦେଶ । ତା'ପରେ ସାଥିରେ ଆଗନ୍ତୁକକୁ ଧରି ସେ ପୁଅ ପାଖକୁ ଗଲେ । ଦାନୀ ଲୋକଟି ପିଲାଟିକୁ ଟିକିଏ ପରୀକ୍ଷା କଲା । ତା ପରେ କିଛି ତେଲ ଗରମ

କରି ଆଣିବାକୁ କହିଲା । ଗରମ ତେଲ ଆସିବାରୁ ସେ ନିଜେ ତାକୁ ରାଜା ପୁଅଙ୍କ ଦେହସାରା ମାଲିସ୍ କରିଦେଲା । ପ୍ରକୃତରେ ଏହା ଅତି ଆଶ୍ଚର୍ଯ୍ୟର କଥା । ବହୁଦିନରୁ ଶର୍ଯ୍ୟାଶାୟୀ ପିଲାଟି ବିଛଣାରେ ଉଠି ବସିଲା । ସେ ଠିଆ ହେଲା । ସେ ଠିଆ ହେବାର ଦେଖି ରାଜା ଆନନ୍ଦରେ ବିହ୍ୱଳ । ପାଖଲୋକଙ୍କୁ ଡ଼ାକି ଆଗନ୍ତୁକଙ୍କୁ ସତ୍କାର କରିବାକୁ ଆଦେଶ ଦେଲେ ।

ରାଜାଙ୍କ ଆଦେଶରେ ଆଗନ୍ତୁକଙ୍କୁ ବହୁତ ଧନରତ୍ନ ଦିଆଗଲା । ତାଙ୍କୁ ସେ ସହରରେ ବସବାସ କରିବା ପାଇଁ ଏକ ଅଟ୍ଟାଳିକା ବି ମିଳିଲା । ଏବେ ସେ ରାଜ୍ୟର ସବୁଠାରୁ ଧନୀଲୋକ ।

ଦାନୀ ଲୋକଟି ଖାଲି ବସି ପଇସା ଉଡ଼ାଇଲା ନାହିଁ । ସେ ଗୋଟିଏ ଦୋକାନ ଆରମ୍ଭ କଲା । ସେ ଦୋକାନରେ ସବୁ ଜିନିଷ ଶସ୍ତା । ଓଜନରେ କେହି କେବେ ଠକନ୍ତି ନାହିଁ । ଅଳ୍ପ ଦିନରେ ସେ ଦୋକାନରେ ନାଁ ଚାରିଆଡ଼େ ବ୍ୟାପିଗଲା । ବଡ଼ ବଡ଼ ବ୍ୟବସାୟୀମାନେ ଆସି ତା ଠାରୁ ଜିନିଷ କିଣିଲେ । ତାର ବ୍ୟବସାୟ ସେଇ ସହରରେ ଆଉ ସୀମାବଦ୍ଧ ନଥିଲା । ବାହାରୁ ମଧ ବ୍ୟବସାୟୀମାନେ ଆସି ସେଠୁ ଜିନିଷ କିଣିନେଲେ ।

ଏ ଖବର କୃପଣ ପାଖରେ ପହଞ୍ଚିଗଲା । ସେ ଏଠାରୁ ଶସ୍ତାରେ ଜିନିଷ କିଣି ବ୍ୟବସାୟ କରିବାକୁ ଏ ସହରକୁ ଆସିଲା । ଏଠି ଦୁଇବନ୍ଧୁ ପରସ୍ପରକୁ ଦେଖି ଖୁବ୍ ଖୁସୀ । ଆନନ୍ଦରେ ଗଦ୍‌ଗଦ୍ । ଉଭୟଙ୍କ ଭିତରେ ବହୁ ସମୟ ଧରି ବିଭିନ୍ନ ବିଷୟରେ ଆଲୋଚନା ହେଲା । ତା ପରେ କୃପଣଟି ପଚାରିଲା "ତୁ ତ ଅଳ୍ପ କିଛି ଟଙ୍କା ଧରି ମୋ ପାଖରୁ ଆସିଲୁ । ଏଠି କିପରି ଏତେ ବଡ଼ ଧନୀଲୋକ ହେଲୁ ?"

ଦାନୀ ଲୋକଟି କହିଲା – "ଏଠି ଜଦି ମୋର ସାତଦିନ ଅତିଥି ହୋଇ ରହିବୁ, ତାହାହେଲେ ମୁଁ ତୋତେ ସବୁକଥା କହିବି ।"

କୃପଣର ତ ଖୁବ୍ ଧନୀ ହେବାକୁ ଇଚ୍ଛା । ସେ ରାଜି ହୋଇ ଧନୀଲୋକଟିର ଆତିଥ୍ୟ ଗ୍ରହଣ କଲା । ସାତଦିନ ଏହା ଭିତରେ ବିତିଗଲା । ଦିନେ ଦାନୀ ଲୋକଟି ତା ପୂର୍ବ ଅଂଶୀଦାର ଆଗରେ କହିଲା – "ତୋ ଠାରୁ ବିଦା ନେଇ ମୁଁ ଚାଲିଚାଲି ଆସି ଶେଷରେ ଏଇ ସହର ଉପକଣ୍ଠରେ ପହଞ୍ଚିଲି ।

ସେଠି ଗୋଟିଏ ଖାଲ ଜାଗା ଅଛି । ତାର ଚାରିପଟେ ନଡ଼ା ଗଦା ଦିଆହୋଇଛି । ମୁଁ ସେଇ ଖାଲ ଜାଗାରେ ରାତିଟା କଟାଇବା ପାଇଁ ଶୋଇଗଲି । ରାତି ଅଧରେ ଭୂତମାନେ ସଭା କଲେ । ସେଠୁ ଜାଣିଲି – ରାଜା ପୁଅ ଶକ୍ତ ବେମାର । କେହି ଭଲ କରିପାରୁ ନାହାନ୍ତି । ତା ଭିତରୁ ଜଣେ ଔଷଧ ବତାଇ ଦେଲା । ମୁଁ ଆସି ଯେପରି କହିଥିଲା ରାଜା ପୁଅର ସେମିତି ଚିକ୍ରିସା କଲି । ପିଲାଟି ଭଲ ହୋଇଗଲା । ରାଜା ଅଜସ୍ର ଧନ ଦେଲେ । ସେଥିପାଇଁ ମୁଁ ଆଜି ରାଜ୍ୟରେ ସବୁଠାରୁ ଧନୀ ।''

କୃପଣ ଏ ସବୁ କଥାଶୁଣି ନିଜ ଭାଗ୍ୟ ପରୀକ୍ଷା କରିବା ପାଇଁ ସ୍ଥିର କଲା । ସେ କହିଲା – ''ଭାଇ, ମୋର ଟଙ୍କା ପଇସା ସବୁ ତୁ ରଖ । ଆଜି ମୁଁ ଯାଉଛି । ସେ ଖାଲ ଜାଗାରେ ଶୋଇବି ।''

ଦାନୀ ଲୋକଟି ଭାବିଲା – ସବୁବେଳ ସମାନ ନୁହଁ । ତାଛଡ଼ା ଭୂତମାନେ ଯେଉଁଠି ଜୁଟନ୍ତି, ସେ ଜାଗା ଜମା ନିରାପଦ ନୁହଁ । ସେଠି ବିପଦ ବହୁତ । ତା ଭାଗ୍ୟ ଭଲଥିଲା । ତେଣୁ ସବୁ ସୁବିଧାରେ ଚାଲିଗଲା । ସାଙ୍ଗ ଭାଗ୍ୟରେ ଯେ କ'ଣ ଅଛି ? କିଏ ଜାଣେ ? ସାଙ୍ଗକୁ ମନା କରିବାକୁ ତାର ଷୋଳପଣ ଇଛା । କିନ୍ତୁ ସେ ଜାଣେ, ସାଙ୍ଗ ତାର କୃପଣ । ଧନୀ ହେବାକୁ ତାର ପ୍ରବଳ ଇଛା । ସେ ତା କଥା ଶୁଣିବ ନାହିଁ । ବରଂ ସେ ଓଲଟା ବୁଝିବ । ମନରେ ଅଶେଷ ଦ୍ୱନ୍ଦ । ଦାନୀଟି ଚିନ୍ତାଗ୍ରସ୍ତ । କିନ୍ତୁ କିଛି ସେ କହିଲା ନାହିଁ ।

କୃପଣଟିର ମନ ଲାଗିଛି ସେ ସେଇ ଜାଗାକୁ ଗଲା । ପ୍ରଥମ ରାତିଟି କଟିଗଲା । କେହି ଭୂତ ଆସିଲେ ନାହିଁ । ଦ୍ୱିତୀୟ ରାତି ବି ସେଇମିତି କଟିଗଲା । ତୃତୀୟ ରାତି । ସେ ଦିନଟି କୃପଣ ନିଦରେ ଶୋଇଯାଇଥାଏ । ଏତିକି ବେଳେ ସବୁ ଭୂତମାନେ ଜୁଟିଲେ । ତାପରେ ସଭା ହେଲା । ସେଠି ଜଣେ ଭୂତ କହିଲା – ''ଆମେ ବେଶୀ କଥା କହିବା ନାହିଁ । ଦିନର ଆଖି ଅଛି । ରାତିର କାନ ଅଛି ।''

ଅନ୍ୟ ଜଣେ ଭୂତ ଏଥିରେ ମର୍ମ କିଛି ବୁଝି ପାରିଲା ନାହିଁ । ସେ କ'ଣ ହେଲା ବୋଲି ପଚାରିଲା ।

ପ୍ରଥମ ଭୂତଟି କହିଲା –'' ଗଲାଥର ରାଜାପୁଅ କିପରି ଭଲ ହେବ, ସେ କଥା ଏଠି ପ୍ରକାଶ କରିଥିଲି । କିନ୍ତୁ ଏଠି କିଏ ଲୁଚିଥିଲା । ସେ ଶୁଣି ପିଲାଟିକୁ ଭଲ କରି ଦେଲା ।''

ଆଉ ଜଣେ ଭୂତ କହିଲା – "ମୋତେ ଦିଆସିଲଟାଏ ଦିଅ । ମୁଁ ଏ ଖାଲ ଜାଗା ଦେଖି ଆସେ ।" ସେ ଭୂତ ଦେଖିଲା – କୃପଣକୁ । ସେ ନିଦରେ ଶୋଇଯାଇଛି । ସେ ଦିଆସିଲ୍ ସାହାର୍ଯ୍ୟରେ ନଡ଼ାରେ ନିଆଁ ଲଗାଇଦେଲା । ଲୋକଟି ପୋଡ଼ିଗଲା ।

ସବୁ କୃପଣଙ୍କର ଭାଗ୍ୟ ଏକା । ଦାନଶୀଳ ଲୋକ ସମସ୍ତ ଟଙ୍କା ପାଇଗଲା ।



# ସୂର୍ଯ୍ୟ ପାହାଡ଼

ବହୁଦିନ ତଳର କଥା । ଗୋଟିଏ ବୁଢ଼ା ଥିଲା । ତାର ସମ୍ପତ୍ତି ବହୁତ । ତାଛଡ଼ା ତାର ଗାଈ, ଗୋରୁ, ଛେଳି ମେଣ୍ଢା ଅନେକ । ତାର ଦୁଇ ପୁଅ । ବଡ଼ଟି କୃପଣ, ଲୋଭୀ । ପରଶ୍ରୀକାତର । ଇର୍ଷା ପରାୟଣ । ପଇସା ପାଇଁ ପାଗଳ । ତାର ମୋହବତ୍, ସ୍ନେହ, ଶ୍ରଦ୍ଧା କିଛି ନାହିଁ । ପଇସା ହିଁ ତାର ଜୀବନ, ସାନଟି ଠିକ୍ ଓଲଟା । ସେ ସ୍ନେହୀ, ଦୟାଳୁ, ପରୋପକାରୀ, ଧର୍ମ ପରାୟଣ, ସାଧୁ, ସଚ୍ଚୋଟ ଓ ବନ୍ଧୁ ବତ୍ସଳ । ସେ ବଡ଼ ଭାଇକୁ ବାପା ଭଳି ଭକ୍ତି କରେ । ବଡ଼ ଭାଇର କଥା କେବେହେଲେ ତଳେ ପକାଏ ନାହିଁ ।

ବୁଢ଼ାଟି ମରିଗଲା ପରେ ସମସ୍ତ ସମ୍ପତ୍ତି ଦୁଇଭାଇ ଉତ୍ତରାଧିକାର ସୂତ୍ରରେ ପାଇଲେ ସତ କିନ୍ତୁ ବଡ଼ ଭାଇର ମନରେ ବହୁ ଅଶାନ୍ତି । ଏଥିରେ ସେ ରାଜି ହୋଇପାରିଲା ନାହିଁ । ସେ ଭାବେ – ସାନ ଭାଇ ତାର କଣ୍ଟା । ତାକୁ ବିଦା କରି ସମସ୍ତ ସମ୍ପତ୍ତି ସେ କିପରି ପାଇବ, ତାହା ହିଁ ତାର ଚିନ୍ତା । ସେଥିପାଇଁ ମନେ ମନେ ସେ ବହୁ ଯୋଜନା କରେ ।

ଦିନେ ବଡ଼ ଭାଇଟି ସାନ ଭାଇକୁ କହିଲା –"ଆମ ଦିହିଙ୍କ ମଧ୍ୟରେ ସମ୍ପର୍କ ନିବିଡ଼ । ଘନିଷ୍ଠ । କିନ୍ତୁ ସମ୍ପତ୍ତି ସବୁ ଅନିଷ୍ଟର କାରଣ । ସେଥିପାଇଁ ଆଗରୁ କଥା ଅଛି, ଯେତେ ଭାଇ ସେତେ ଘର । ତେଣୁ ମୁଁ ଭାବୁଛି, ଆମ ଭିତରେ ଆମେ ଆମ ସମ୍ପତ୍ତିକୁ ବାଣ୍ଟିନେବା । ତାଛଡ଼ା ଆମ ମନ ଏଇନେ ଏକ । ଆମେ ସୁବିଧାରେ ଭାଗ ବାଣ୍ଟି ପାରିବା । କଳି ତକରାଳ ହେବନାହିଁ । ତାଛଡ଼ା

ଆମର ଗୁମର ଆମ ଭିତରେ ଅଛି । କଳି ହେଲେ କଥା ପଦାକୁ ଆସିବ । ଭଦ୍ରଲୋକ ବସିବେ । ସବୁକଥା ଜାଣିବେ । ଆମର ସମ୍ପତ୍ତି ବାଡ଼ି କେତେ ଏଇନେ ସିନା ଅନ୍ୟକୁ ଅକଳନ, ସେତେବେଳେ ସେସବୁ ଦାଣ୍ଡ ଘାଟରେ ଗଡ଼ି ଗଡ଼ାଇବ ।

ସାନ, ବଡ଼ ଭାଇର କଥା ମାନେ । ଅବାଧ ସେ କେବେ ହୋଇ ନାହିଁ । ସେ ବଡ଼ ଭାଇ କଥାରେ ରାଜି ହୋଇଗଲା । ସେଇଠୁ ବଡ଼ ଭାଇ କହିଲା – ''ବାପା ଚାହୁଁଥିଲେ, ବିଲରେ ତାଙ୍କର ହିଡ଼ ନପଡୁ, ଦୁଆରେ ପ୍ରାଚୀର ଠିଆ ନହେଉ । ବାପାଙ୍କ କଥା ରଖିବାକୁ ହେଲେ, ଯେ ସମ୍ପତ୍ତି ସମ୍ଭାଳି ପାରିବ, ସେ ସମ୍ପତ୍ତି ନେବ । ତେଣୁ ଆମ ଭିତରେ କିଏ ପାରିବାର ତାହା ପରୀକ୍ଷା ହେବା ଉଚିତ୍ । ମୁଁ ମନେ ମନେ ଭାବୁଛି, ତୁ ମୁଁ ବଡ଼ି ସକାଳୁ ଯିବା । ହଳ କରିବା । ବେଶି ଜମି ଯେ ହଳ କରି ପାରିବ, ଏ ସମ୍ପତ୍ତି ତାର । କିନ୍ତୁ ଗୋଟିଏ ସର୍ତ୍ତରେ । ଦିନ ଯାକ ଆମେ ହଳ କଲାବେଳେ କିଛି ଖାଇବା ନାହିଁ କି ପିଇବା ନାହିଁ । ହଳ ବନ୍ଦ କଲେ ଯାହା ଖିଆପିଆ ହେବ ।'' ସାନ ଭାଇ କିଛି ଯୁକ୍ତି ବି କଲା ନାହିଁ । ଏଥିରେ ବି ସମ୍ମତି ଜଣାଇଲା ।

ପରଦିନ ଭୋରରୁ ବଡ଼ଭାଇ ଉଠି ପଡ଼ିଲା । ସେତେବେଳକୁ ସାନ ଭାଇକୁ ନିଘୋଡ଼ ନିଦ । ବଡ଼ ଭାଇ ଚଟାପଟ୍ ଯାଇ ନିତ୍ୟକର୍ମ ସାରି ପେଟେ ଖାଇ ଦେଲା । ତାପରେ ସାନ ଭାଇକୁ ନିଦରୁ ଉଠାଇ କହିଲା – ''ସକାଳ ହେଲାଣି ଆଉ ଡ଼େରି କାହିଁକି ? ଚାଲ ଯିବା ହଳ କରିବା ।''

ସାନ ଭାଇ ଧଡ଼ପଡ଼ ହୋଇ ଉଠିଲା । ତାପରେ ମୁହଁଟା ଧୋଇ ହୋଇ ଲୁଗା ପିନ୍ଧି ହଳ କରିବାକୁ ବାହାରି ପଡ଼ିଲା ।

ବଡ଼ ଭାଇ ଯେଉଁ ବଳଦକୁ ନେଇ ହଳ କରିବାକୁ ମନସ୍ଥ କରିଥିଲା, ତାକୁ ତା ସ୍ତ୍ରୀ ଭୋରରୁ ମୁଁହାଇ ବି ଦେଇଥିଲା । ସାନ ଭାଇ ଯେଉଁ ବଳଦ ନେଇଗଲା, ସେମାନେ ବି ଅଖିଆ ।

ଦୁଇ ଭାଇ ହଳ ଆରମ୍ଭ କଲେ । ଦ୍ୱିପହରକୁ ବଡ଼ ଭାଇର ଭୋକ ନାହିଁ । ତାର ବଳଦ ଅବସ୍ଥା ବି ସେଇଆ । ସକାଳୁ କିଛି ନଖାଇଥିବାରୁ ସାନ ଭାଇକୁ ଭାରି ଭୋକ । ବଳଦଙ୍କ ପେଟରେ ଦାନା ନଥିବାରୁ ସେମାନେ ଭୋକରେ ଛଟପଟ ହେବାକୁ ଲାଗିଲେ । ସେମାନେ ଆଉ ହଳ କରିବାକୁ ମନ ଦେଲେ

ନାହିଁ । ଖାଲି ଏପଟକୁ ଆଉ ସେପଟକୁ ଟାଣିଲେ । ସାନ ଭାଇ ଆଉ ହଳ କରି ପାରିଲା ନାହିଁ । ହଳ ବନ୍ଦକରି ଘରକୁ ଫେରିଲା । ବଡ଼ କିନ୍ତୁ ସଂଧ୍ୟାଯାଏ ହଳ ବନ୍ଦ କଲା ନାହିଁ । ଫଳରେ ସେ ବହୁତ ଜମି ହଳ କରିଦେଲା । ସେ ଯେ ଜିତିଲା ଏକଥା ଅସ୍ୱୀକାର କରିବାର କାହାର ନଥିଲା ।

ସନ୍ଧ୍ୟା ବେଳକୁ ଦୁଇ ଭାଇଙ୍କର କଥା ପଡ଼ିଲା । ବଡ଼ଭାଇ ସାନଭାଇକୁ କହିଲା - "ସବୁ ବିଲବାଡ଼ି, ଘରଦ୍ୱାର, ଗୋରୁଗାଈ, ଛେଳି ମେଣ୍ଢା ମୋର । ତୋର ତ କିଛି ନାହିଁ । ତୁ କଣ ମୋ ଘରେ ମୂଲ ଲାଗି ପେଟ ପୋଷିବୁ ?"

ସାନ ଭାଇ କହିଲା - "ନାଁ, ମୋର ଏଠି ରହିବାର ଆବଶ୍ୟକତା ନାହିଁ । ମୁଁ ଘର ଛାଡ଼ି କାଲି ସକାଳୁ ଚାଲିଯିବି ।"

ଏକଥା ଶୁଣି ବଡ଼ ଭାଇ ଭାରି ଖୁସି । ସତକୁ ସତ ରାତି ପାହି ନାହଁ, ସାନ ଭାଇ ଘର ଛାଡ଼ି ଚାଲିଗଲା । ହାତରେ ପଇସାଟିଏ ନଥିଲା ।

ସାନଟି ପେଟ ପୋଷିବା ପାଇଁ ନା ନା ସ୍ଥାନ ବୁଲିଲା । ଶେଷକୁ ବହୁ ଦୂରରେ ଥିବା ପାହାଡ଼ର ଗୋଟିଏ ଗୁମ୍ଫାରେ ଆଶ୍ରୟ ନେଲା । ଦିନଯାକ ସେ ଜଙ୍ଗଲରେ କାଠ କାଟେ । ସନ୍ଧ୍ୟାକୁ ପାଖ ବଜାରରେ ତାକୁ ନେଇ ବିକେ । ଯାହା ପାଏ ସେଥିରେ ଖାଇବା ପାଇଁ ରୁଟି ଓ ମାଂସ କିଣେ । ଅତି ଦୀନ ଦରିଦ୍ର ଭାବରେ ସେ ଦିନ କାଟେ ।

ବଡ଼ ଭାଇ ସବୁ ସମ୍ପତ୍ତି ପାଇ ବି ସ୍ଥିର ହୋଇ ବସିପାରିଲା ନାହିଁ । ସେ ସମ୍ପତ୍ତିର ଉନ୍ନତି କରିବା ପାଇଁ ପରିଶ୍ରମ କଲା । ତାର ସମ୍ପତ୍ତି ବହୁ ବଢ଼ିଗଲା । କିନ୍ତୁ ସାନ ଭାଇକୁ ଠକି କରି ସେ ବିଦା କରି ଦେଇଛି, ଆଉ ସାନ ଭାଇ ଦରିଦ୍ର ହିସାବରେ ଦିନ କାଟୁଥିବ, ସେ କଥା ଦିନେ ହେଲେ ସେ ମନକୁ ଆଣେ ନାହିଁ ।

ସାନ ଭାଇ ତ ଏକୁଟିଆ । ବେଳେବେଳେ ବଡ଼ କଥା ସେ ଭାବେ । କିନ୍ତୁ ବଡ଼ ଭାଇ ପ୍ରତିତାର କ୍ରୋଧ ବା ଇର୍ଷା କେବେହେଲେ ନଥାଏ ।

ଦିନେ ସେ ଜଙ୍ଗଲକୁ ଯାଇ ଗୋଟିଏ ଗଛ କାଟିବ ବୋଲି ସ୍ଥିର କଲା । ସେ ଦେଖିଲା - ଗଛ ଉପରେ ଡ଼ାହିରେ ଗୋଟିଏ ଚଢ଼େଇ ବସା । ତାକୁ ଦେଖି ତାର ଦୟା ହେଲା । ସେ ଭାବିଲା, ଯଦି ବସାରେ ପକ୍ଷୀର ଛୁଆଥିବ, ଗଛ ପଡ଼ିଲେ, ସେମାନେ ବି ପଡ଼ି ମରିଯିବେ । ଜୀବ ହତ୍ୟା ଦୋଷ । ସେ କରିବ

ନାହିଁ । ତେଣୁ ପ୍ରଥମେ ବସାରେ କିଏ ଅଛି ନା ନାହିଁ ଜାଣିବାକୁ ସେ ଫୋଫଡ଼ ପକାଇବ । ଯେମିତି ଭାବିଲା ସେମିତି କଲା । ପ୍ରଥମ ଫୋପଡ଼ଟି ବସା ପର୍ଯ୍ୟନ୍ତ ଗଲା, ଦ୍ୱିତୀୟଟିର ଅବସ୍ଥା ତଦ୍ରୂପ । ତୃତୀୟ ଫୋଫଡ଼ ପକ୍ଷୀବସା ପାଖ ଡ଼ାହିରେ ବାଜିଲା । ତା ଭିତରୁ ଚିଲଟିଏ ଫଡ଼ଫଡ଼ କରି ବାହାରି ଆସିଲା । ସେ ସାନ ଭାଇର ଚାରିପଟେ ଘେର ପକାଇଲା । ତା ପରେ ସେ ପାଖ ଡ଼ାହିରେ ବସି ଡ଼େଣାକୁ ଫଡ଼ଫଡ଼ କରି କହିଲା – ''ବହୁ ପରିଶ୍ରମ କରି ମୁଁ ଏଠି ବସା ବାନ୍ଧିଛି । ଏଥିରେ ମୋର ପିଲାମାନେ ଅଛନ୍ତି । ତୁ ମୋ ବସା ଭାଙ୍ଗ ନାହିଁ । ମୁଁ ତୋତେ ସୂର୍ଯ୍ୟ ପାହାଡ଼କୁ ନେଇଯିବି ।''

ସାନ ଭାଇ ପଚାରିଲା – ''ମୁଁ ସୂର୍ଯ୍ୟ ପାହାଡ଼ କାହିଁକି ଯିବି ? ସେଠି କ'ଣ ଅଛି ?''

ଚିଲ କହିଲା – '' ସେଠି ହିରା ନୀଳା ସୁନା ରୂପା ଅପର୍ଯ୍ୟାପ୍ତ ପଡ଼ିଛି ।'' ସେଠାକୁ ଯାଇ ସେଠୁ କିଛି ଧନ ଧରି ଆସିଲେ, ତୁ ଜୀବନ ଯାକ ସୁଖରେ ଚଳିଯିବୁ ।''

ସାନଭାଇ ପଚାରିଲା –''କେମିତି ସେଠାକୁ ଯାଇ ହେବ ।''

ଚିଲ କହିଲା – ''କାଲି ରାତି ଥାଉ ଥାଉ ତୁ ଏଠାକୁ ଆସିବୁ । ମୋ ସାଥିରେ ଭୋରରୁ ସେଠାକୁ ଚାଲିଯିବୁ । ସାଥିରେ ଗୋଟିଏ ଛୋଟ ବ୍ୟାଗ ଆଣିଥିବୁ । ସେଥିରେ ସୁନା ରୁପା ହୀରା ନୀଳା ଘେନି ଆସିବୁ ।''

ସାନ ଭାଇ ସେ ଗଛକୁ ଆଉ ହାଣିଲା ନାହିଁ । ଜଙ୍ଗଲରେ ଦିନ ଯାକ ଏପଟ ସେପଟ ହୋଇ ସନ୍ଧ୍ୟାବେଳକୁ ତାର ଗୁମ୍ଫାକୁ ଫେରି ଆସିଲା ।

ପରଦିନ ଭୋରରୁ ଚିଲ ପିଛା ଧରି ସେ ସୁର୍ଯ୍ୟ ପାହାଡ଼ରେ ପହଞ୍ଚିଲା । ଯେତେବେଳେ, ପାହାଡ଼ ଶୃଙ୍ଗ ଦେଶରେ ସାନଭାଇ ପହଞ୍ଚିଲା, ସେ ତା ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ଚାରିଆଡ଼େ ଧନ ରତ୍ନ ଜମା ହୋଇଛି । ପାହାଡ଼ ପରି । ସେସବୁର ଉଜ୍ଜଳରେ ତାର ଆଖି ଝଲସି ଉଠିଲା । ଏତିକିବେଳେ ଚିଲ କହିଲା – ''ଅପେକ୍ଷା କର ନାହିଁ । ସୂର୍ଯ୍ୟ ଉଦୟ ପୂର୍ବରୁ ଏଠୁ ପଳାଇବାକୁ ହେବ ।''

ସାନ ବି ଆଉ ଅପେକ୍ଷା କଲା ନାହିଁ । ତରତରରେ ଛୋଟ ବ୍ୟାଗଟିରେ ସେ ସୁନା ହୀରା ନୀଳା କିଛି ପୁରାଇଲା । ଚିଲକୁ ଧନ୍ୟବାନ ଦେଇ ତା କଥାନୁସାରେ ପାହାଡ଼ ତଳକୁ ତରତର ହୋଇ ପଳାଇ ଆସିଲା । ସେଇଦିନ ସେ ଗୁମ୍ଫାକୁ ଛାଡ଼ିଦେଲା । ସହରରେ ଗୋଟିଏ ଘର ନେଲା । ଭଲ ଜିନିଷ କିଣିଲା । ବାହା ହୋଇ ସୁଖରେ ସଂସାର କଲା ।

ସବୁ ଖବର ବ୍ୟାପିଯାଏ । ଠିକ୍ ଜଳର ଲହରୀ ପରି । ସାନ ଭାଇ ଜଣେ ଧନୀ ସମ୍ଭ୍ରାନ୍ତ ଲୋକ ଭାବରେ ସହରରେ ପରିଚିତ, ଏକଥା ବଡ଼ଭାଇ କାନକୁ ଗଲା । ଏ ଖବର ଶୁଣି ସେ ଈର୍ଷାରେ ଜଳିଗଲା । ନିଜ ଆଖିରେ ସାନର ଅବସ୍ଥା ଦେଖିବାକୁ ସେ ସହରକୁ ଧାଇଁ ଆସିଲା । ସାନକୁ ଭେଟିଲା ।

ବଡ଼ ଭାଇକୁ ଦେଖି ସାନର କେତେ ଆନନ୍ଦ ସେକଥା କହି ହେବ ନାହିଁ । ସେ ଖୁବ୍ ଆଦର କରି ବଡ଼ଭାଇକୁ ପାଛୋଟି ନେଲା । ତାକୁ ତା ଘରେ ରଖିଲା ।

ବଡ଼ ମନ କେଉଁଠି ନାହିଁ । ସାନ କିପରି ଧନୀ ହେଲା, ସେ କଥା ଜାଣିବାକୁ ସେ ବ୍ୟାକୁଳ । ଟିକିଏ ଯେମିତି ସୁବିଧା ପାଇଛି ସେ ସାନଠାରୁ ତାର ଧନୀ ହେବା ବିଷୟରେ ସମସ୍ତ ବିଷୟ ବୁଝିନେଲା । ସନ୍ଧ୍ୟା ବେଳକୁ ସେ ସାନ ଘରୁ ବିଦାୟ ନେଇ ତା ଘରକୁ ପଳାଇଲା ।

ବଡ଼ ଭାଇକୁ ତର ରହିଲା ନାହିଁ । ସେ ଜଙ୍ଗଲକୁ ଯାଇ ଚିଲବସା ଖୋଜି ଖୋଜି ସାନଭାଇ ଯେଉଁ ଗଛ କାଟିବାକୁ ଯାଇଥିଲା, ସେଇ ଗଛ ମୂଳରେ ପହଞ୍ଚିଲା । ସେ ବଡ଼ ଫୋପଡ଼ଟିଏ ଧରି ଚିଲ ବସାକୁ ପକାଇଲା । ପ୍ରଥମ ଥର, ଦ୍ୱିତୀୟ ଥର ଗଲା, ତୃତୀୟ ଥରରେ ଫୋପଡ଼ ସିଧା ଯେଉଁ ଡ଼ାହିରେ ଚିଲ ବସା ସେଥିରେ ବାଜିଲା । ବସାଟା ଖୁବ୍ ଜୋରରେ ହଲିଗଲା । ଚିଲଟି ବାହାରି ଆସି କହିଲା- ''ମୁଁ ବହୁ କଷ୍ଟରେ ବସାଟିଏ ବାନ୍ଧିଛି । ଏଠାରେ ମୋ ଛୁଆମାନଙ୍କୁ ମୁଁ ପାଳେ । ତୁମେ ଏହାକୁ ନଷ୍ଟ କର ନାହିଁ । କାଲି ଭୋରରୁ ଆସ । ମୁଁ ତୁମକୁ ସୂର୍ଯ୍ୟ ପାହାଡ଼କୁ ନେଇଯିବି । ତୁମେ ସାଥିରେ ଗୋଟିଏ ଛୋଟ ମୁଣି ଓ କିଛି ଖାଦ୍ୟ ଆଣିଥିବ ।''

କୃପଣଟି ଆସିବା ବାଟରେ ଭାବିଲା – ଚିଲଟାର ବୁଦ୍ଧି ନାହିଁ । ସେଇଟା ନିପଟ ବୋକା । ଛୋଟ ମୁଣିରେ କେତେ ଧନ ରତ୍ନ ଆଣିବ ? ବଡ଼ ମୁଣିଟିଏ ନେଲେ ମନଇଚ୍ଛା ଧନ ଆଣି ପ୍ରଖ୍ୟାତ ଧନୀ ସିନା ହୋଇପାରିବ ।

ଘରେ ପହଞ୍ଚି ସ୍ତ୍ରୀକୁ ତାର କହିଲା – ''ଗୋଟିଏ ବଡ଼ ଚାଦର ଆଣି ତାକୁ ଦୁଇପଟ ସିଲାଇ କରିଦେ । ମୁଁ ତାକୁ ନେଇଯିବି । ସେଥିରେ ସୁନା ରୁପା ପୂରାଇ ଆଣିବି ।''

ରାତି ଯାକ ଅନିଦ୍ରା ହୋଇ ସ୍ତ୍ରୀ ତାର ମୁଣିଟିଏ କଲା । ରାତି ଥାଉ ଥାଉ କୃପଣଟି ଚିଲ ବସାକୁ ଧାଇଁଲା । ସେଠି ପହଞ୍ଚିଲା ବେଳକୁ ରାତି ବି ଥିଲା । ସକାଳ ହୋଇନି । କୃପଣ ଆସି ହାଜର । ଏ କଥା ଦେଖି ଚିଲ ଆଶ୍ଚର୍ଯ୍ୟ । କଥା ତ ଦେଇଛି । କଥା ରଖିବ । ତେଣୁ ଭୋରରୁ ସେ ଉଡ଼ି ଉଡ଼ି ଗଲା । କୃପଣଟି ଚିଲକୁ ଦେଖି ଧାଇଁ ଧାଇଁ ଗଲା । ସେମାନେ ସୂର୍ଯ୍ୟ ପାହାଡ଼ର ଅଗରେ ପହଞ୍ଚି ଗଲେ । ସେଠାରେ ପଡ଼ିଥିବା ସୁନା ରୂପା ହୀରା ନୀଳା ଦେଖି କୃପଣଟି ଭୋଳ । ଆନନ୍ଦରେ ମତୁଆଲ । ଏ ଢ଼ଙ୍ଗ ତାର ଦେଖି ଚିଲ ତାକୁ ହୁସିଆର କରାଇ କହିଲା – ''ଶୀଘ୍ର ଶୀଘ୍ର କିଛି ଧନରତ୍ନ ଧରି ଚାଲିଆସ । ସୂର୍ଯ୍ୟ ଉଦୟ ହେବା ପୂର୍ବରୁ ଆମେ ଯେପରି ଦୂରକୁ ଚାଲି ଯାଇଥିବା । ନହେଲେ ଖରାରେ ଜଳି ପୋଡ଼ି ପାଉଁଶ ହୋଇଯିବ ।''

କୃପଣଟି ତା କଥାରେ କାନ ଦେଲା ନାହିଁ । ବଡ଼ ମୁଣିଟିଏ ନେଇଛି । ସେଥିରେ ଧନରତ୍ନ ପୂରାଇବାକୁ ଲାଗିଲା । ଚିଲ ବାରମ୍ବାର ତାକୁ ଚେତାଇ ଦେଉଥାଏ । ସେ ପଟକୁ ସେ କାନ ଦେବାକୁ ଜମା ପ୍ରସ୍ତୁତ ନଥିଲା ।

ସୂର୍ଯ୍ୟ ଉଦୟ ହେଲା । କୃପଣଟି ସେ ଜାଗା ଛାଡ଼ିଲା ନାହିଁ । ମୁହୂର୍ତ୍ତକ ମଧ୍ୟରେ ସୂର୍ଯ୍ୟଙ୍କ ଖରା ଟାଣ ହୋଇଗଲା । ନିଆଁ ଭଳି ଜଳିଲା । କୃପଣଟି ସେଇ ଖରାରେ ଜଳିପୋଡ଼ି ପାଉଁଶ ହୋଇଗଲା ।

ଚିଲଟି ଉଡ଼ି ଚାଲି ଆସିଲା ବେଳେ କହୁଥିଲା, – ''ଯେଉଁ ଲୋକ ନିଜ ପାଇଁ ସବୁ ନେବାକୁ ଚାହେଁ, ତାର ପରିସମାପ୍ତି ଏଇପରି ଭାବରେ ହୋଇଥାଏ ।''

ସାନ ଭାଇଟି ସୁଖରେ ଶାନ୍ତିରେ ତାର ରହିଥିଲା ।



# ଅସରନ୍ତି ଗପ

କଳବାଲାଟି ଗହମ ପେଷି ଅଟା କରିଦେଲା । ତା ପରେ ଅଟାତକ ବଣିକ ପୁଅକୁ ଦେଲାବେଳେ କହିଲା – ''ଭାଇ ଅଟା ନ ମିଳିବାରୁ ମୋ ପିଲାମାନେ ଉପାସ । ମୋତେ ଟିକିଏ ଅଟା ଦେଲେ, ପିଲାମାନେ ଅନ୍ତତଃ ତାଙ୍କ ପାଟିଟା ଓଦା କରିଦେବେ । ମୋର ତ ଦାବି ନାହିଁ । ସେଇଟା ତମର ଦୟା ।''

ପିଲାମାନେ ଉପାସ ପଡ଼ିଥିବା ଶୁଣି ବଣିକ ପୁଅର ଦୟା ହେଲା । ସେ କହିଲା – ''ହଉ ତମେ କିଛି ଅଟା ତମ ପିଲାଙ୍କ ପାଇଁ ରଖ ।''

କଳବାଲାଟି ଭଲେଇ ହେଲା ଭଳି କହିଲା – ''ବେଶି ନୁହେଁ, ଖଣ୍ଡେ ରୁଟି ହେଲେ ବି ଚଳିଯିବ । ମୁଁ ଜାଗାଟିଏ ଆଣେ ।''

ତାପରେ ଘର ଭିତରକୁ ଗଲା ଗୋଟିଏ ହାତରେ ଥାଳି ଆଉ ହାତରେ ପାଣି ଢ଼ାଳଟି ଧରି ଫେରିଲା । ସେ ଅଳ୍ପ କିଛି ଅଟା ସେ ବଣିକ ପୁଅ ମୁଣିରୁ ନେଲା । ସେଥିରେ କିଛି ପାଣି ମିଶାଇଲା । ଅଟା ପାଣିଆ ହୋଇଗଲା । ସେ ବଣିକ ପୁଅ ମୁହଁକୁ ଅନାଇ ଅତି ଦୟନୀୟ ଭାବରେ କହିଲା – ''ଏମିତି ପାଣିଆ ଅଟା କିଛି କାମ ଦେବ ନାହିଁ । ଯଦି ଅନୁମତି ଦେବେ, ଆଉ ଦି'ଟା ଅଟା ନେବି ।''

ବଣିକ ପୁଅ ଖୁବ୍ ସରଳ । ସେ କଳ ମାଲିକ କଥାରେ ରାଜି ହେଲା । କଳବାଲା ପୁଣି ଦି'ଟା ଅଟା ନେଇ ଚକଟିଲା । ଏଥର ଚକଟା ଖୁବ୍ ଶୁଖିଲା ହୋଇଗଲା । ତେଣୁ ସେ ପୁଣି କିଛି ପାଣି ମିଶାଇଲା । ଚକଟା ପୁଣି ପାଣି ହୋଇଗଲା । ପୁଣି ଆଉ ଟିକିଏ ଅଟା ମାଗି କଳବାଲା ସେଥିରେ ମିଶାଇଲା । ସେ କାଠୁଆ ହେବାରୁ ପୁଣି ପାଣି ମିଶାଇଲା । ତାହା ପାଣିଆ ହେବାରୁ ପୁଣି ଅଟା ମାଗିଲା । ଏଇମିତି କରି କରି ସେ ମୁଣିରେ ଥିବା ସବୁ ଅଟା ତକ ସାରିଦେଲା । ବଣିକ ପୁଅ ସେଇଠି ସେମିତି ବସି ଏସବୁ ଦେଖୁଥାଏ । ସେ ଭାବିଲା – ବାପା କଥା ତାର ଠିକ୍ । କଳବାଲା ତ ଗୋଟିଏ ଚାଲ ଖେଳିଲା । ସେ କ'ଣ କରିବ ବୋଲି ଭାବୁଥାଏ । କଳ ମାଲିକ ବଣିକ ପୁଅକୁ ନ କହି ଚକଟା ଅଟାତକ ଧରି ବେଲିବାକୁ ଗଲା । ସେଠି ସବୁ ଅଟାରେ ଗୋଟିଏ ବଡ଼ ପାଉରୁଟି ତିଆରି କଲା ।

କଳ ମାଲିକ କବଳରୁ ବର୍ତ୍ତିବାକୁ ବଣିକ ପୁଅ ତାକୁ କହିଲା – ''ମୋର ପିଲାମାନେ ଉପାସ । ତାଙ୍କ ପାଇଁ ମୁଁ ଅଟା ଚୂରାଇବାକୁ ଆଣିଥିଲି । ତମେ ସବୁ ଅଟା ନେଇଗଲ । ମୋ ପିଲାଙ୍କ ପାଇଁ କିଛି ଅଟା ରଖିଲ ନାହିଁ । ଗୋଟିଏ ବୋଲି ପାଉଁରୁଟି କଲ । ତାକୁ କିଏ ନେବ, ଏଇଟା ଗୋଟେ ସମସ୍ୟା । ଆସ ଆମ ଭିତରୁ ଯିଏ ଲମ୍ବା ଓ ଭଲ ଗପ କହିବ, ସେ ପାଉଁରୁଟିଟା ନେବ ।

କଳବାଲା ଦେଖିଲା, ବଣିକ ପୁଅ କଥାରେ ରାଜି ନହେଲେ, ସେ ଗଣ୍ଡଗୋଳ କରିବ । ଲୋକେ ଜୁଟିଲେ, ତାକୁ ଦୋଷ ଦେବେ । ତାଛଡ଼ା ପାଉରୁଟିଟି ସେ ନେବ । ତା କଥାରେ ରାଜି ହେଲେ, ବଣିକ ପୁଅ ହାରି ଚୁପ୍ ହୋଇ ଚାଲିଯିବ । ଗଣ୍ଡଗୋଳ ପାଇଁ ବାଟ ନଥିବ । ତେଣୁ ସେ ବଣିକ ପୁଅ କଥାରେ ରାଜି ହୋଇଗଲା ।

ବଣିକ ପୁଅ କହିଲା- ''ତମର ପାଉରୁଟି, ତମେ ଗପ ଆଗ କୁହ ।''

କଳବାଲା କହିଲା ''ମୋ ବାପା ଜଣେ ଚାଷୀ ଥିଲେ । ଥରେ ସେ ତରଭୂଜ ଚାଷ କଲେ । କିଂତୁ ଗୋଟିଏ ମାତ୍ର ଫଳିଲା । ସେଇଟା ଏତେ ବଡ଼ ଯେ ସାରା ସହରକୁ ସେ ଆବୋରି ପକାଇଲା । ଏମିତିକି ବିରାଡ଼ି ପିଲାଟିଏ ବି ସହରକୁ ଯାଇ ପାରିଲା ନାହିଁ । ସହରରୁ ଯିବା ଆସିବା ପୁରାପୁରି ବନ୍ଦ । କେହି ତାକୁ ଘୁଞ୍ଚାଇ ପାରିଲେ ନାହିଁ । ଶେଷରେ ତରଭୁଜ ଦେଇ ରାସ୍ତାଟିଏ ନିର୍ମାଣ ହେଲା । ବହୁ ଦିନ ପର୍ଯ୍ୟନ୍ତ ସେ ତରଭୂଜ ସେଇଠି ରହିଥିଲା ।''

ଏବେ ବଣିକ ପୁଅର ପାଳି । ସେ କହିଲା – '' ମୋ ଜେଜେ ବାପା ଜଣେ ମହୁମାଛି ପାଳକ । ଦିନେ ମହୁମାଛି ଫେଣାରୁ ରାଣୀ ମହୁମାଛି କୁଆଡ଼େ ଚାଲିଗଲା । ସେ ସେଇ ରାଣୀ ମହୁମାଛି ଖୁବ୍ ଖୋଜିଲେ । ବହୁ ଜଗା ବୁଲିଲେ । ତାର ସନ୍ଧାନ ମିଳିଲା ନାହିଁ । ଶେଷରେ ସେ ଗୋଟିଏ ଚାଷୀ ପାଖରେ ସେଇ ରାଣୀମହୁମାଛିକୁ ଦେଖିଲେ । ସେତେବେଳକୁ ଚାଷୀ ଏ ରାଣୀ ମହୁମାଛିକୁ ଗୋଟିଏ ବଳଦ ସାଥିରେ ଯୋଚି ହଳକୁ ବାହାରିଥାଏ । ତାକୁ ଦେଖି ମୋ ଜେଜେବାପା କହିଲେ- ଏଇଟା ମୋର ରାଣୀ ମହୁମାଛି । ତାକୁ ଖୋଲିଦେ । ମୁଁ ତାକୁ ନେବି । ଚାଷୀଟି ଯୁକ୍ତିକଲା- ତିନିଦିନ ହେଲା ମୋ ବଳଦଟି ମରିଯାଇଛି । ମୋର ହଳ

କରିବାକୁ ଆଉ ପଟେ ବଳଦ ନଥିଲା । ଏହାକୁ ପାଇ ମୁଁ ହଳକୁ ନେଉଛି । ତୁମେ ପଟେ ବଳଦ ଦେଲେ, ଏହାକୁ ନେଇଯିବ ।

ମୋର ଜେଜେବାପା ଏ ପ୍ରସ୍ତାବରେ ରାଜିହେଲେ ନାହିଁ । ତେଣୁ ବାଧ ହୋଇ ରାଣୀ ମହୁମାଛିଟିକୁ ଚାଷୀଟି ମୋ ଜେଜେବାପାଙ୍କୁ ଦେଇଦେଲା ।

ବାଟରେ ମୋ ଜେଜେବାପା ଦେଖିଲେ ଯେ ଯେଉଁଠି ରାଣୀ ମହୁମାଛି ବେକରେ ଯୁଆଳି ଯୋତା ହୋଇଥିଲା, ସେଠି ଗୋଟେ ଘା ହୋଇଛି । ମୋ ଜେଜେବାପା ସେ ଘା' ଶୁଖିବା ପାଇଁ ବହୁ ଚେଷ୍ଟା କଲେ । ଡ଼ାକ୍ତର କବିରାଜକୁ ଦେଖାଇଲେ ସେ ଘା'ଟି ଜମା ଶୁଖିଲା ନାହିଁ ।

ଦିନେ ସେ ଗୋଟିଏ କୋଳିର ମଞ୍ଜି ଆଣିଲେ । ତାକୁ ଭଲକରି ଚୁରି ଦେଲେ । ତାକୁ ଘା ଚାରିପଟେ ଲଗାଇ ଦେଲେ । ତାପରେ ସେ ଗୋଟିଏ ଗଛ ମୂଳରେ ନିଜକୁ ଲମ୍ବାଇ ଦେଲେ । ତାଙ୍କୁ ନିଦ ହୋଇଗଲେ । ସେ ଉଠି ଯାହା ଦେଖିଲେ, ସେ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ରାଣୀ ମହୁମାଛିର ଘାରେ ଲଗାଇବାବେଳେ ଯେଉଁଠି କୋଳି ମଞ୍ଜିର ଗୁଣ୍ଡ ପଡ଼ିଥିଲା, ସେଥିରୁ ଗଛସବୁ ଉଠି ଯାଇଛି । ସେଥିରୁ ଗୋଟିଏ ଗଛରେ ପେନ୍ଥାଏ କୋଳି ଝୁଲୁଥିଲା । ସେ ତାକୁ ତୋଳିବାକୁ ଚେଷ୍ଟା କଲେ । ହାତ ତ ପାଇଲା ନାହିଁ । ମାଟିର ଟେକାଟିଏ ଫିଙ୍ଗିଲି । ସେ ଟେକାଟି ଯେଉଁଠି ବାଜିଲା, ସେଠି କିଛି ମାଟି ଲାଗିଗଲା । ସେ ମାଟିରୁ ଗୋଟିଏ ବିଲ ହୋଇଗଲା । ସେଇ କ୍ଷେତରେ ଗହମ ବଢ଼ିବାକୁ ଲାଗିଲା । ବାର୍‌ହାଟିଏ ଆସି ସେଠି ପହଞ୍ଚିଗଲା । ମୋ ଜେଜେବାପା ତାକୁ ଧରିଲେ । ତା ଲାଞ୍ଜରେ ଗୋଟିଏ ବଡ଼ ଦା' ଆଣି ବାନ୍ଧିଦେଲେ । ସେ ଯେତେବେଳେ ବିଲରେ ଧାଇଁଲା, ତା ଲାଞ୍ଜରେ ବଂଧାଥିବା ଦା'ରେ ସେ ସବୁ ଗହମ କାଟି ପକାଇଲା । ମୋ ଜେଜେବାପା ଗହମତକ ସଂଗ୍ରହ କରି ନେଲେ । ଗହମତକ ଧରି ଆସିଲେ କଳବାଲା ପାଖକୁ । କଳବାଲା ତାକୁ ଚୁରି ଗୁଟି କଲା । ବୁଢ଼ା ତାକୁ ଘରକୁ ନେଲେ । ଯେତେବେଳେ ସେ ଘରକୁ ନେଲେ ବୋଲି ଉଚ୍ଚାରଣ କଲା, ହାତରେ ବଡ଼ ପାଉଁରୁଟିଟି ଧରି ସେ ଘରକୁ ଦୌଡ଼ିଲା ।



# ଆବ୍ରାହମ ଓ କୁକୁର

ଇହୁଦୀ ବୁଢ଼ାଟିଏ । ଥରେ ତାର ଆଉ ଗୋଟିଏ ବୁଢ଼ା ସାଥିରେ ଦେଖାହେଲା । ସେ ବୁଢ଼ାଟିର ଚେହେରା ଖୁବ୍ ସୁନ୍ଦର । ଆଖି ଗୁଡ଼ାକ ଖୁବ୍ ଉଜ୍ଜଳ । ଜଳନ୍ତା କୋଇଲା ପରି । ସେ ନିଜକୁ ପିତା ଆବ୍ରାହମ ବୋଲି ପରିଚୟ ଦେଲେ । ତା ପରେ ସେ ଇହୁଦୀ ବୁଢ଼ାକୁ କହିଲେ – ''ମୁଁ ତମ ଉପରେ ସନ୍ତୁଷ୍ଟ । ମୋତେ ବର ମାଗ । ମୁଁ ଦେବି ।''

ଇହୁଦୀ ବୁଢ଼ାଟି ଏପ୍ରକାର ସୁଯୋଗ ଦେଖି ହଡ଼ବଡ଼େଇ ଗଲା । କ'ଣ ବର ସେ ମାଗିବ, ଜାଣିପାରିଲା ନାହିଁ । ସେ କହିଲା –''ପ୍ରଭୁ, ତମର ଯଦି ବର ଦେବାକୁ ଇଚ୍ଛା, ମୋତେ ଏପରି ଶକ୍ତି ଦିଅନ୍ତୁ ଯାହା ଫଳରେ ଜୀବଜନ୍ତୁ କଥାବାର୍ତ୍ତା ମୁଁ ବୁଝି ପାରିବି ।''

ପିତା ଆବ୍ରାହମ ତଥାସ୍ତୁ କହି ଅନ୍ତର୍ଦ୍ଧାନ ହୋଇଗଲେ ।

ସେହି ଦିନୁ ଇହୁଦୀ ବୁଢ଼ା ଗୋରୁଗାଈ, ପଶୁପକ୍ଷୀମାନଙ୍କ ଭାଷା ବୁଝି ପାରିଲା ।

ଦିନକର କଥା, ସେ ଘରେ ଆସି ପହଞ୍ଚିଲା ବେଳକୁ କୁକୁର ସବୁ ଭୁକୁଥିଲେ । ସେ ସେମାନଙ୍କ ଭୁକାରୁ ଜାଣିଲା ଯେ, ତାର ଗୋଟିଏ ଗାଈ ସପ୍ତାହକ ମଧ୍ୟରେ ମରିଯିବ ।

ଇହୁଦୀ ବୁଢ଼ା ଏକଥା ଶୁଣିବା ମାତ୍ରେ ପ୍ରତିକାର କରିବାର ବାଟ ଖୋଜିଲା । ପର ଦିନ ସେ ଗାଈଟିକୁ ହାଟକୁ ନେଇଗଲା । ସେଠାରେ ସେ ଗାଈଟିର ଦାମ ବଜାର ଦରଠାରୁ ଟିକିଏ କମ୍ କରି ବିକିଦେଲା । ଶସ୍ତା ଦର ଦେଖି ସାଥି ସାଥି ଚାଷିଟିଏ ତାକୁ କିଣିନେଲା ।

ଏହା ଭିତରେ ଆଉରି କିଛି ଦିନ ଚାଲିଗଲା । ସେଦିନ କୁକୁରମାନେ ଭୁକୁଥାନ୍ତି । ଇହୁଦୀ ବୁଢ଼ା ସେମାନଙ୍କ ଭୁକାକୁ କାନ ଦେଲା । ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥିଲେ – ''ମାଲିକ ଘରେ ଆମର ନିଆଁ ଲାଗିବ । ଜିନିଷ ପତ୍ର ସବୁ ପୋଡ଼ିଯିବ । ଆମ ମାଲିକର ଭଣ୍ଡାର ଘରେ ବହୁତ ଜିନିଷ ଅଛି । ମାଲିକ ଜିନିଷ ସବୁ ବାହାର କରିବାର ବ୍ୟସ୍ତ ହେବେ । ଆମକୁ କେହି

ଲଗିବେ ନାହିଁ । ଆମର ଏ ମଉକାରେ ଦିବ୍ୟ ଭୋଜନ ମିଳିଯିବ ।'' ଇହୁଦି ବୁଢ଼ା କ'ଣ ସମ୍ଭଳା ପଡ଼େ ? ସେ ଆଉ ଗୋଟିଏ ଘର କିଣିଲା । ତାର ରହିବା ଘରେ ଯେଉଁ ସବୁ ଜିନିଷ ଥିଲା, ସେସବୁକୁ ସେଠାକୁ ବୋହି ନେଲା । ଶସ୍ତାରେ ଏହି ଘରଟିକୁ ବିକି ଦେଲା । ଏଥର ଇହୁଦୀଟି ଆଶ୍ୱସ୍ତ ।

ପୁଣି କିଛି ଦିନ ପରେ କୁକୁରମାନେ ଭୁକିଲେ । ସେମାନେ କୁହାକୁହି ହୋଇଥିଲେ - ''ଆମ ମାଲିକର ଘରେ ଭୟଙ୍କର ବିପଦ । ମାଲିକିଆଣି ଆମର ଆଉ ବଞ୍ଚିବ ନାହିଁ ।''

ଏକଥା ଶୁଣି ଇହୁଦୀ ବୁଢ଼ାର ମୁଣ୍ଡ ଚକ୍ରି ଖାଇଲା । ସେ କ'ଣ କରିବ ଜାଣି ପାରିଲା ନାହିଁ । ଯେଉଁଠି ବସିଲା, ସେଠି କାନ୍ଦିଲା । ଶେଷକୁ ସ୍ଥିର କଲା, ରାବ୍‌ବିଙ୍କ ପାଖକୁ ଯିବ । ତାଙ୍କର ପରାମର୍ଶ ନେବ ।

ରାବ୍‌ବିଙ୍କ ପାଖରେ ପହଞ୍ଚି ତାର କିପରି ପିତା ଆବ୍ରାହମଙ୍କ ସାଥିରେ ଦେଖାହେଲା ଓ ସେ କିପରି ତାଙ୍କୁ ବର ଦେଲେ ଆଉ ସେହି ବର ଫଳରେ ସେ କିପରି ତାଙ୍କୁ ବର ଦେଲେ ଆଉ ସେହି ବର ଫଳରେ ସେ କିପରି ବିପତ୍ତିରୁ ନିଜକୁ ରକ୍ଷା କରିବା ପାଇଁ ଗାଈ ଓ ଘର ବିକିଲା । ସବୁ ଗୋଟି ଗୋଟି କରି କହିଲା । ତାପରେ କହିଲା - ''ଏବେ କୁକୁରମାନେ କହୁଥିଲେ ଯେ ତାର ସ୍ତ୍ରୀ ମରିଯିବ । ତେଣୁ ଆପଣ ଦୟା କରନ୍ତୁ । ଏଥିରୁ କିପରି ଉଦ୍ଧାରିବି, ସେ ବାଟ ବତାଇ ଦିଅନ୍ତୁ ।''

ରାବ୍‌ବି ଏକଥା ଶୁଣି ବୁଢ଼ା ଇହୁଦୀ ଉପରେ ଖୁବ୍ ରାଗି ଗଲେ । ସେ କହିଲେ - ''ତୁ ଜଣେ ବଦମାସ୍, ପିତା ଆବ୍ରାହମ ତୋ ମଙ୍ଗଳ ପାଇଁ ତୋତେ ବର ଦେଲେ । ତୁ ତାଙ୍କୁ ଭୁଲ ବୁଝିଲୁ । ସେ ଚାହିଁଥିଲେ - ତୋର ଗାଈ ମରି ଯାଇଥିଲେ ଆଉ ଘର ପୋଡ଼ି ଯାଇଥିଲେ ତୋ ସ୍ତ୍ରୀ ମରି ନଥାନ୍ତା । ସେ ରକ୍ଷାପାଇ ଯାଇଥାନ୍ତା । ତୁ ତାଙ୍କୁ ଏହା କରାଇଦେଲୁ ନାହିଁ । ବର୍ତ୍ତମାନ ତୁ ଯାହା କଲେ ବି ତୋର ଆଉ ରକ୍ଷା ନାହିଁ । ସେ ଯେମିତି ହେଲେ ମରିବ ।''

ଇହୁଦୀ ବୁଢ଼ା ନିଜର ଅପକର୍ମ ପାଇଁ ନିଜକୁ ଦୋଷ ଦେଇ କାନ୍ଦିଲା ।



# ମଣିଷର ଜୀବନ କାଳ

ଆଦାମର ସୃଷ୍ଟି ହେଲା । ସୃଷ୍ଟିକର୍ତ୍ତା ଆଦାମ୍‌ଙ୍କୁ ପୃଥିବୀର ସୌନ୍ଦର୍ଯ୍ୟ ଦେଖାଇଲେ । ତା ପରେ ତାଙ୍କୁ କହିଲେ – ''ଏ ପୃଥିବୀ ତମର । ଆନନ୍ଦରେ ତୁମେ ଏଠି ରହିବ । ସବୁ ଜୀବଜନ୍ତୁ ତୁମର ଅଧିନ । ତୁମେ ଏଠି ରାଜୁତି କରିବ ।''

''ପ୍ରଭୁ ସବୁ ତ ମୋର ଅଧିନ ହେବ ବୋଲି ଆଜ୍ଞା ଦେଲେ । କିନ୍ତୁ ଏ ସୁଖମୟ ଜୀବନ ମୁଁ କେତେ ବର୍ଷ ଭୋଗ କରିପାରିବି ?'' ଏହାଥିଲା ଆଦାମଙ୍କର ସୃଷ୍ଟିକର୍ତ୍ତାଙ୍କ ପାଇଁ ଜିଜ୍ଞାସା ।

''ତିରିଶ ବର୍ଷ'' ଉତ୍ତର ମିଳିଲା ।

ଆଦାମ ମୁହଁରେ ବିସ୍ମୟ ଭାବ । ଚେହେରା ତାର ମଳିନ । ସେ ଧିରେ ଧିରେ ଅନୁନୟ ହୋଇ କହିଲା – ''ମୋତେ ତିରିଶି ବର୍ଷ । ଏତେ କମ୍ ସମୟ ? ପ୍ରଭୁ ଏହାକୁ କଣ ଆଉ କିଛି ବର୍ଷ ବଢ଼ାଇ ପାରିବେ ନାହିଁ ?'' ଭଗବାନ ଚିନ୍ତା ମଗ୍ନ । ତାଙ୍କ ସୃଷ୍ଟି ପୃଥିବୀର ସର୍ବଶ୍ରେଷ୍ଠ ଜୀବର ଅନୁରୋଧକୁ ସେ ଏଡ଼ାଇବାକୁ କଷ୍ଟ ଅନୁଭବ କଲେ । ତେଣୁ କହିଲେ – ''ମୁଁ ସବୁ ଜୀବଜନ୍ତୁଙ୍କର ବୟସର ସୀମା ସ୍ଥିର କରିସାରିଛି । ସେମାନେ ଯଦି ତାଙ୍କ ବୟସରୁ ତମକୁ କିଛି ଦାନ କରନ୍ତେ ତମ ବୟସର ସୀମା ବଢ଼ି ଯାଆନ୍ତା । ସେଥିପାଇଁ ମୁଁ ସେମାନଙ୍କୁ ଡକାଉଛି । ତୁମେ ଅପେକ୍ଷା କର ।''

ପ୍ରଥମେ ସେଠାରେ ଗଧ ଆସି ପହଞ୍ଚିଲା । ଭଗବାନ ତାକୁ କହିଲେ ''ଆର୍ଶୀବାଦ ନିଅ । ତୁମର ଭାଗ୍ୟରେ ଲେଖାହେଲା – ତୁମେ କଠିନ ପରିଶ୍ରମ କରିବ । ବୋଝ ବୋହିବ । ଅଳ୍ପ ଘାସ ଖାଇବ । ତା ପୁଣି ମାଲିକର ଅଗଣାରେ ବନ୍ଧା ହୋଇ ।''

ଗଧ କହିଲା – ''ମୁଁ କେତେ ବର୍ଷ ବଞ୍ଚିବି ମହାପ୍ରଭୁ ।''

''ଚାଳିଶି ବର୍ଷ'' ଉତ୍ତର ଆସିଲା ।

ଗଧଟି ବୋବାଇଲା । ତା ଥିଲା କରୁଣ ଦୁଃଖର କାନ୍ଦଣା ।

ଭଗବାନଙ୍କର ଦୟା ହେଲା । ସେ ପଚାରିଲେ – ତୁମର ଆପତ୍ତି କ'ଣ ।''

"ମୁଁ ଏତେ ଦିନ ଧରି ଏତେ ଦୁଃଖ ସହି ପାରିବି ନାହିଁ ପ୍ରଭୁ । ତାଙ୍କୁ କମାଇ ଦେଇ ଅଧା କରିଦିଅନ୍ତୁ ।" ଏହାଥିଲା ଗଧଟିର ପ୍ରାର୍ଥନା ।

"ତଥାସ୍ତୁ ।" ଭଗବାନ କହିଲେ ।

ତାପରେ ଗଧଟିକୁ ସେଠାରୁ ଚାଲି ଯିବା ପାଇଁ ନିର୍ଦ୍ଦେଶ ଦେଲେ ।

ଗଧଟି ଚାଲିଗଲା ପରେ ଭଗବାନ ଆଦାମକୁ କହିଲେ- "ଏହି କୋଡ଼ିଏ ବର୍ଷ ବୟସ ତୁମର ବଢ଼ାଇ ଦେଲି । ଗଧର ଦାନ ତୁମେ ଉପଭୋଗ କରିବ ।"

ତାପରେ କୁକୁର ଆସିଲା । ଆର୍ଶୀବାଦ ଭଗବାନ ତାକୁ ଦେଲେ । ଏବଂ କହିଲେ -"ମନୁଷ୍ୟର ବିଶ୍ୱସ୍ତ ବନ୍ଧୁ ହୋଇ ରହିବୁ । ତାର ସମ୍ପତ୍ତିକୁ ତୁ ଜଗିବୁ । କିନ୍ତୁ ତୋତେ ସେ ବନ୍ଧୁର ସମ୍ମାନ ଦେବ ନାହିଁ । ତାର ପରିତ୍ୟକ୍ତ ଓ ବଳକା ଖାଦ୍ୟ ଖାଇ ତୁ ଜୀବନ ଧାରଣ କରିବୁ । ଦରକାର ବେଳେ ବି ତୋତେ ତିରସ୍କାର କରିବ । ମାଡ଼ ବି ଦେବ ।"

କୁକୁର ମୁହଁରେ ଦୁଃଖର ଆଭାସ । ସେ ପଚାରିଲା "ପ୍ରଭୁ କେତେଦିନ ମୁଁ ଏ ସଂସାରରେ ରହିବି ।"

"ଚାଳିଶି ବର୍ଷ "

"ଏତେ କାଳ ମୁଁ ଦୁଃଖ ଅପମାନ ସହିବାକୁ ଅକ୍ଷମ ମୋର ବୟସ ଅଧା କରିଦିଅ ।" ଏହାଥିଲା କୁକୁରର ପ୍ରାର୍ଥନା ।

ଭଗବାନ ତାକୁ ମଧ୍ୟ ତଥାସ୍ତୁ ବୋଲି କହିଲେ । ସେଠାରୁ ସେ ଚାଲି ଯିବାକୁ ଇଙ୍ଗିତ ଦେଲେ । ସେ ଯିବା ପରେ ଆଦାମକୁ କହିଲେ, "ତମ ବୟସରେ ଆଉ କୋଡ଼ିଏ ବର୍ଷ ଯୋଡ଼ି ଦେଲି । ଏବେ ତୋର ବୟସ ସତୁରୀ ବର୍ଷ ହୋଇଗଲା ।" ଭଗବାନଙ୍କୁ ସେ ଅଶେଷ ଧନ୍ୟବାଦ ଦେଲା ।

ଏତିକି ବେଳେ ମାଙ୍କଡ଼ ଆସି ହାଜର ଭଗବାନ ତାଙ୍କୁ ଆର୍ଶୀବାଦ ଦେଇ ତାକୁ କହିଲେ, - "ତୁ ତୋର ଚାରି ଗୋଡ଼ରେ ଚାଲିବୁ । ତୋର ଚେହେରା ଦେଖି ଲୋକେ ହସିବେ । ତୁ ଗଛର ଫଳ ଉପରେ ନିର୍ଭର କରିବୁ । ଲୋକେ ଦୁଃର୍ ଦୁଃର୍ ମାର ମାର କରିବେ । ସୁଖ ଶାନ୍ତିରେ ଗଛରେ ବସି ବି ତୁ ଫଳ ଖାଇ ପାରିବୁ ନାହିଁ ।"

ତାହେଲେ କେତେ ବର୍ଷ ବଞ୍ଚିବି ମୁଁ ପ୍ରଭୁ । ମାଙ୍କଡ଼ର ପ୍ରଶ୍ନ ଥିଲା । ଉତ୍ତର ଆସିଲା ''ଷାଠିଏ ବର୍ଷ ।''

ମାଙ୍କଡ଼ ବିନମ୍ର ଭାବରେ କହିଲା - ''ଏତେ ବର୍ଷ କାହିଁକି ପ୍ରଭୁ । ତାହାର ଅଧା ହେଲେ ମଧ୍ୟ ଯଥେଷ୍ଟ ।'' ତାହାହିଁ ହେଉ ।''

ମାଙ୍କଡ଼ ଚାଲିଗଲା ପରେ ଭଗବାନ ଆଦାମଙ୍କୁ କହିଲେ, - ''ମାଙ୍କଡ଼ର ଦାନ ତିରିଶି ବର୍ଷ ତୁମ ଜୀବନ ସାଥିରେ ସାମିଲ ହୋଇଗଲା ।'' ଭଗବାନ କହିଲେ, - ''ଆଦାମ୍ ତୁମର ବୟସ ଶହେ ବର୍ଷ ସିନା ହେଲା । ତୁମେ ଯାହାର ବୟସ ଦାନ ନେଇ ତାହାର ଜୀବନ ତୁମେ ଭୋଗ କରିବ ।''

ସେହି ଦିନୁ ମଣିଷର ବୟସ ଶହେ ବର୍ଷ । ପ୍ରଥମ ଭାଗ ସେ ତା ନିଜ ଜୀବନ ଭୋଗେ । ତାହା ତାହାର ସାହସ, ସାମର୍ଥ୍ୟ ଓ ନିର୍ଭିକତାରେ ପୂର୍ଣ୍ଣ । ଦ୍ୱିତୀୟ ପର୍ଯ୍ୟାୟ ହେଲା ତା ଜୀବନର କୋଡ଼ିଏ ବର୍ଷ । ଏହା ଗଧର ଦାନ ଏଣୁ ତିରିଶ ଠାରୁ ପଚାଶ ବର୍ଷ ପର୍ଯ୍ୟନ୍ତ ସେ ଗଧ ଭଳି ଖଟେ । ଏହି ସମୟରେ ସେ ବିବାହ କରେ । ପିଲାର ଜନ୍ମ ଦାତା ହୁଏ । ରୋଜଗାର କରେ । ସଂସାର ଚଳାଏ । ପିଲା ଓ ସ୍ତ୍ରୀର ସୁଖ ସ୍ୱାଚ୍ଛନ୍ଦ ପାଇଁ ସେ ଗଧ ଭଳି ଖଟେ । ଏହିପରି ଭାବେ ତାର ଜୀବନ କୋଡ଼ିଏ ବର୍ଷ କଟିଯାଏ । ତୃତୀୟ ପର୍ଯ୍ୟାୟ ହେଲା ତା ଜୀବନର କୋଡ଼ିଏ ବର୍ଷ । ପଚାଶରୁ ସତୁରୀ ଏହି ସମୟରେ ମଣିଷ କୁକୁର ପରି ସମ୍ପତ୍ତିକୁ ଜଗେ । ସେ ପିଲାଙ୍କ ସାଥିରେ ଖାଏ ବି ନାହିଁ । ଏହିପରି ଭାବରେ ବିଶ୍ୱସ୍ତ ହୋଇ ସେ ଜୀବନର କୋଡ଼ିଏ ବର୍ଷ କଟାଏ । ତାପରେ ଆସିଲା ଜୀବନର ଶେଷ ତିରିଶି ବର୍ଷ ସତୁରୀରୁ ଶହେ । ସେତେବେଳେ ଦାନ୍ତ ତାର ପଡ଼ିଯାଏ । ମୁହଁରେ ତାର ଭାଙ୍ଗ ପଡ଼େ । ମାଂସ ଲୋଚା କୋଚା ହୋଇଯାଏ । ତାର ଚାଲିବା ଢ଼ଙ୍ଗ ଦୋସରା ହୋଇଯାଏ । ପିଲାମାନେ ଦେଖି ହସନ୍ତି । ଲୋକେ ଥଟ୍ଟା କରନ୍ତି । ଯେପରିକି ମଣିଷ ସମ୍ପ୍ରଦାୟ ଠାରୁ ସେ ଅଲଗା । ଏହିପରି ଭାବରେ ମାଙ୍କଡ଼ ଠାରୁ ଆଣିଥିବା ଦାନ ଶେଷ ତିରିଶି ବର୍ଷ ତାହାର କଟେ ।



# ବିରାଡ଼ିର ଛାଳି

ସବୁ ଜୀବ ସୃଷ୍ଟି ହେବାପରେ ଆଉ ଏକ ସମସ୍ୟା ଦେଖାଦେଲା । ସେମାନେ କିପରି ଚଳିବେ, ଜୀବମାନେ ଜାଣିନଥିଲେ । ତେଣୁ ବିଭିନ୍ନ ପ୍ରକାର କନ୍ଦଳ ସୃଷ୍ଟି ହେଲା ।

ସୃଷ୍ଟିକର୍ତ୍ତା ସେମାନଙ୍କ ଚଳିବା ପାଇଁ ବ୍ୟବସ୍ଥା କରୁଥିଲେ ।

ବିରାଡ଼ିର ପାଳି ପଡ଼ିଲା । ସୃଷ୍ଟିକର୍ତ୍ତା ତାକୁ ପଚାରିଲେ – ''ତୁ ଦୈନନ୍ଦିନ ଚଳିବା ପାଇଁ କିପରି ଖାଦ୍ୟ ସଂଗ୍ରହ କରିବୁ ? ସେ କଥା ଚିନ୍ତା କରିଛୁ ?''

ବିରାଡ଼ିଟି କହିଲା – ''ମୁଁ ତ ମଣିଷ ଭିତରେ ରହି ମଣିଷ ଠାରୁ ଖାଦ୍ୟ ସଂଗ୍ରହ କରିବା ଛଡ଼ା ମୋର ବାଟ ନାହିଁ ।''

ସୃଷ୍ଟିକର୍ତ୍ତା କହିଲେ – ''ତିନିଜଣ ଖାଦ୍ୟ ରଖନ୍ତି । ସେମାନେ ହେଲେ ଚାଷୀ, ଦୋକାନୀ ଆଉ ବୁଲାବିକାଳି । ତୁ କାହାଠାରୁ ଖାଦ୍ୟ ନେବୁ ?''

ବିରାଡ଼ି କହିଲା – ''ରୋଜଗାର ନଥିଲେ ଏମାନଙ୍କ ଠାରୁ ଖାଦ୍ୟ ନେଇ ହେବ ନାହିଁ ।''

''ତାହା ହେଲେ କ'ଣ କରାଯିବ ?'' ସୃଷ୍ଟିକର୍ତ୍ତାଙ୍କର ପ୍ରଶ୍ନ ଥିଲା ।

ବିରାଡ଼ି କହିଲା ''ଚାଷି, ଦୋକାନୀ ଓ ବୁଲା ବିକାଳି ଛଡ଼ା ଗୃହୀଣୀମାନେ ରୋଷେଇ ଘରେ ଖାଦ୍ୟ ରଖନ୍ତି ।''

''ହଁ'' । ସୃଷ୍ଟିକର୍ତ୍ତା କହିଲେ ।

ବିରାଡ଼ି ପ୍ରାର୍ଥନା କଲା – ''ପ୍ରଭୁ, ସେମାନଙ୍କୁ ବେଳେବେଳେ ଅନ୍ୟମନସ୍କ କରି ଦିଅନ୍ତୁ । ସେଇ ଅବସ୍ଥାରେ ସେମାନେ ଖାଦ୍ୟ ଖୋଲାରଖି ରୋଷେଇ ଦ୍ୱାର ମେଲା କରିଦେଇଯିବେ । ମୁଁ ତାର ସୁଯୋଗ ନେବି । ସେତିକିବେଳେ ରୋଷେଇ ଘରେ ପଶି ମୋର ଖାଦ୍ୟ ସଂଗ୍ରହ କରିଦେବି ।''

ସୃଷ୍ଟିକର୍ତ୍ତା କହିଲେ 'ତଥାସ୍ତୁ ।''



# ମୁଁ କିଏ ପ୍ରମାଣ କରୁ କରୁ ମୋର ଚମଡ଼ା ଉତରା ସରିଥିବ

ଥରେ ଗୋଟିଏ କୋକିଶିଆଳୀ ଧାଉଁଥିଲା, ପ୍ରାଣ ବିକଳରେ । ତାକୁ ଯେ ଦେଖିଲା, ପଚାରିଲା - ''କଥା କ'ଣ ? ଏମିତି ପ୍ରାଣ ବିକଳରେ ଧାଉଁଛୁ କାହିଁକି ?''

ସେ କହିଲା - ''ମୁଁ ଦେଖି ଆସିଲି, ପଞ୍ଚେ ଶିକାରୀ ଓଟ ପଛରେ ଧାଇଁଲେ । ତାକୁ ଧରି ମାରିଲେ । ତାର ଚମଡ଼ା ଉତାରୁଛନ୍ତି । ଆଉ ପଞ୍ଚେ ଓଟ ପଛରେ ଧାଉଁଛନ୍ତି । ତେଣୁ ମୁଁ ଆତ୍ମ ରକ୍ଷା ପାଇଁ ପଳାଇ ଯାଉଛି ।''

ଯେଉଁମାନେ କୋକିଶିଆଳୀକୁ ପଚାରୁଥିଲେ, ତା ଉତ୍ତର ଶୁଣି ଆଶ୍ଚର୍ଯ୍ୟ । ସେମାନେ କହିଲେ - ''ତୁ ତ ଓଟ ନୁହଁ, କୋକିଶିଆଳୀ ?''

କୋକିଶିଆଳୀ କହିଲା - ''ମୁଁ କିଏ ପ୍ରମାଣ କରିବାକୁ ତ ସମୟ ଦରକାର, ତାହା ଭିତରେ ଜଣେ ମୋର ଚମଡ଼ା ଉତାରି ଦେଇଥିବ ।''

ସେଇଦିନୁ ବାବିଲେନିଆ (ଇରାକ) ଇହୁଦୀମାନେ କହିଆସିଛନ୍ତି ''ମୁଁ କିଏ ପ୍ରମାଣ କରୁ କରୁ ମୋର ଚମଡ଼ା ଉତରା ସରିଥିବ ।''

(ଏ ଗପର ରାଜନୈତିକ ଭିତ୍ତି ବହୁତ । ଏହା ୧୯୦୫ ଋଷିଆ ବିପ୍ଳବ ବେଳେ ଖୁବ୍ ପ୍ରଚଳିତ ଥିଲା ।)



# କପୋତ ଓ ସାପର ଦୟା

ଧନୀ ଲୋକଟିଏ ଥିଲା । ତାର ବୟସ ହୋଇଗଲା । ମରିବା ପୂର୍ବରୁ ସେ ପୁଅକୁ କହିଗଲା- ''ପୁଅରେ ପଶୁକୁ ଦୟା କରିବୁ କିନ୍ତୁ ମଣିଷକୁ ନୁହେଁ ।''

ପୁଅଟି ଏକୁଟିଆ ରହେ । ମନଇଚ୍ଛା ଯୁଆଡ଼େ ଇଚ୍ଛା ସିଆଡ଼େ ବୁଲେ । ଥରେ ପଡ଼ିଆରେ ବୁଲୁ ବୁଲୁ ଦେଖିଲା - ଗୋଟିଏ ବୁଦା ଭିତରେ କପୋତଟିଏ ପଡ଼ିଛି । ଡ଼େଣା ତାରି କ୍ଷତ ବିକ୍ଷତ । ସେ ଚିତ୍କାର ଅତି କରୁଣ ଭାବରେ କରୁଥାଏ ।

ସେ କପୋତଟିକୁ ବୁଦାରୁ ବାହାର କଲା । ସାଥିରେ ତାକୁ ନେଇ ଆସି ପିଞ୍ଜରାଟିରେ ରଖିଲା । ତାପରେ ଡ଼ାକ୍ତର ପାଖକୁ ଖବର ପଠାଇଲା । ଡ଼ାକ୍ତର ତ ଆସିଲେ । ରୋଗୀକୁ ଦେଖିବାକୁ ସେ ଚାହିଁଲେ । ପୁଅ ପିଞ୍ଜରାଟି ଆଣି ଡ଼ାକ୍ତର ବାବୁଙ୍କ ଆଗରେ ରଖିଲା । ସେତେବେଳେ ପଶୁପକ୍ଷୀଙ୍କ ଚିକିତ୍ସା ହେଉନଥିଲା କି ପଶୁ ଡ଼ାକ୍ତରମାନେ ନଥିଲେ । ପିଞ୍ଜରାକୁ ଦେଖି ସେଥିପାଇଁ ଡ଼ାକ୍ତର ପଚାରିଲେ - ''ଏଇଟା କ'ଣ ।?''

''ଏଇଟା ରୋଗୀ'' ପୁଅଟି କହିଲା ।

ଡ଼ାକ୍ତର କହିଲେ - ''ତୁମେ କ'ଣ ପାଗଳ ? ତୁମେ ଇୟାରି ପାଇଁ ପଇସା ଖର୍ଚ୍ଚ କରିବାକୁ ବସିଛ ?''

''ଆପଣ ସେ ବିଷୟରେ ଚିନ୍ତା କରନ୍ତୁ ନାହିଁ । ଯାହା ପଇସା ପଡ଼ିବ ମୁଁ ଦେବି । ଆପଣ ତାର ଚିକିତ୍ସା କରନ୍ତୁ ।'' ପୁଅଟି କହିଲା ।

ଡ଼ାକ୍ତର ବାବୁ ଦଶ ପାଉଣ୍ଡ (ଇଂରାଜୀ ମୁଦ୍ରା) ଦାବି କଲେ । ପୁଅଟି ସାଙ୍ଗେ ସାଙ୍ଗେ ଦଶ ପାଉଣ୍ଡ ଦେଇଦେଲା । ପୁଅର ଢ଼ଙ୍ଗ ଦେଖି ଡ଼ାକ୍ତର ଆଶ୍ଚର୍ଯ୍ୟ । ସେ ପକ୍ଷୀଟିର ଚିକିତ୍ସା ହାତକୁ ନେଲେ । ତାପରେ ବହୁବାର ପକ୍ଷୀଟିକୁ ଦେଖିଛନ୍ତି କିନ୍ତୁ ପଇସାଟିଏ ଆଉ ସେ ନେଇ ନାହାନ୍ତି ।

ଚିକିତ୍ସାରେ ରହିବା ପରେ ପକ୍ଷୀଟି ସୁସ୍ଥ ହୋଇଗଲା । ପୁଅଟି ତାକୁ ପିଞ୍ଜରାରେ ଆଉ ରଖିଲା ନାହିଁ । ତଥାପି କପୋତଟି ମଝିରେ ମଝିରେ ଆସେ । ପୁଅ ଅଗଣାରେ ବସେ । ପୁଣି ଉଡ଼ି ଚାଲିଯାଏ ।

ଆଉଦିନେ ଯାଉ ଯାଉ ସେ ଗୋଟିଏ ସାପକୁ ଦେଖିଲା । ସେ ତା ବେକରେ ଆଘାତ ପାଇ ହାଲିଆ ହୋଇ ପଡ଼ିଥାଏ । ପିମ୍ପୁଡ଼ି ସେତେବେଳକୁ ତାକୁ ଘେରି ଯାଇଥାନ୍ତି । ସାପଟିକୁ ଦେଖି ପୁଅର ଦୟା ହେଲା । ପୁଅଟି ରୁମାଲଟିଏ ସାପ ପାଖରେ ପକାଇ ଦେଲା । ସାପଟି ଘୁଷୁଡ଼ି ଘୁଷୁଡ଼ି ରୁମାଲ ଉପରକୁ ଉଠିଲା । ତାକୁ ଉଠାଇ ପୁଅଟି ଘରକୁ ଗଲା । ତାପରେ ଡ଼ାକ୍ତର ପାଖକୁ ଖବର ପଠାଇଲା ।

ଡ଼ାକ୍ତର ଆସି ପଚାରିଲେ - ''ପୁଣି କଣ ହେଲା ? ଅସୁସ୍ଥ ପକ୍ଷୀଟି କେଉଁଠି ?

ପୁଅ କହିଲା- ‘‘ଅସୁସ୍ଥ ପକ୍ଷୀ ସୁସ୍ଥ ହୋଇ ଚାଲିଗଲା । ଏଥର ସାପଟିଏ ଆଣିଛି । ତାକୁ ଟିକିଏ ଭଲ କରିଦିଅନ୍ତୁ ।’’

ଡ଼ାକ୍ତର କହିଲେ - ‘‘ସାପ ?’’

‘‘ହଁ ଆଜ୍ଞା, ଡ଼ରିବାର କିଛି ନାହିଁ । ମୁଁ ତାକୁ ଧରୁଛି । ଆପଣ ପରୀକ୍ଷା କରନ୍ତୁ ।’’ ପୁଅଟି କହିଲା ।

ଡ଼ାକ୍ତର ପୁଅ ଆଡ଼କୁ ଅନାଇଲେ । ତାଙ୍କ ଅନାଇବାରେ ଜଣାଯାଉଥିଲା – ସେ ତାଙ୍କ ଫିସ୍ ମାଗୁଛନ୍ତି ।

ପୁଅଟି କହିଲା – ‘‘ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଏହାର ଚିକିତ୍ସା ପାଇଁ ଦଶ ପାଉଣ୍ଡ ଦେବି ।’’

ଏକଥା ଶୁଣି ଡ଼ାକ୍ତର ଖୁସି । ସାପଟିକୁ ପରୀକ୍ଷା କଲେ । ତା ଦେହରେ ମଲମ ଲଗାଇ ଦେଲେ । ଔଷଧ ଖାଇବାକୁ ଦେଲେ । ଅଳ୍ପଦିନ ଭିତରେ ସାପଟି ସୁସ୍ଥ ହୋଇ ଚାଲିଗଲା ।

ଆଉ ଦିନେ ସେ ସହରର ରାସ୍ତାରେ ଯାଉଥିଲା । ଦେଖିଲା – ଲୋକଟିଏ ରାସ୍ତାରେ ଠିଆ ହୋଇଛି । ଚାରିଆଡ଼େ ଲୋକମାନେ ଘେରି ରହିଛନ୍ତି । ସେମାନେ ତା ଉପରକୁ ଟେକା ପକାଉଛନ୍ତି । ସେ ବାପାଲୋ ମାଲୋ ଚିତ୍କାର କରୁଛି । କିଂତୁ ସେମାନଙ୍କର ଢ଼େଲା ଫିଙ୍ଗା ବନ୍ଦ ହେଉ ନାହିଁ । ଶେଷକୁ ଲୋକଟି ତଳେ ପଡ଼ିଗଲା । ଅଚେତ ହୋଇ । ଖାଲି ଗଁ ଗଁ ଚିତ୍କାର କରୁଥିଲା ।

ପୁଅଟି ଜାଣେ, ସେ ଲୋକଟି ଅପରାଧୀ । ଚୋରି କରୁ କରୁ ଧରା ପଡ଼ିଛି । ସେ ସମୟରେ କଚେରିରେ ବିଚାର ହେଉନଥିଲା କି ଜେଲ ଓ ଜୋରିମନା ଦଣ୍ଡ ନଥିଲା । ଅପରାଧୀ ଧରାପଡ଼ିଲେ, ତାକୁ ସର୍ବସାଧାରଣ ରାସ୍ତାରେ ଠିଆ କରାଯାଉଥିଲା । ତା ଚାରିପଟେ ଗୁଣ୍ଡ ଲୋକ ତା ଉପରକୁ ଢ଼େଲା ପକାନ୍ତି । ସେ ମରିବା ପର୍ଯ୍ୟନ୍ତ । ଲୋକ ସେ ମରିଯିବା ଜାଣିଲେ, ସେଠାରୁ ଚାଲି ଯାଆନ୍ତି । ଯାହାର ଭାଗ୍ୟ ଭଲଥାଏ, ସେ ଏଥିରୁ ବଂଚିଯାଏ କିଂତୁ ଏଥିରୁ ବଂଚିଯାଇଥିବା ଲୋକକୁ ଆଉ ଅଛି ଦଣ୍ଡ ଦିଆ ହୁଏ ନାହିଁ ।

ସମସ୍ତେ ଚାଲିଯିବା ପରେ ପୁଅଟି ଅପରାଧୀ ପାଖକୁ ଗଲା । ଦେଖିଲା, ମୁଣ୍ଡରେ ତାର ଆଘାତ ହୋଇନାହିଁ । ସେ ଜୀବିତ । ଟେକା ମାଡ଼ ଖାଇ ଖାଇ

ଅଚେତ ହୋଇଯାଇଛି । ସେଠି ଆହତ ଲୋକ ପାଖକୁ ଯେମିତି ଯାଉଛି, ଠିକ୍ ବାପାଙ୍କ କଥା ମନେ ପଡ଼ିଲା । ମଣିଷକୁ ଦୟା ନକରିବାକୁ ସେ ତ କହି ଯାଇଛନ୍ତି । ତେଣୁ ସେ ଆଦେଶ ପାଳନ କରିବ ନାଁ ନାହିଁ ସେଇଆ ଭାବିଲା । ପରେ ପରେ ତାର ମନକୁ ଆସିଲା – ଯେତେହେଲେ ଏ ତ ମଣିଷ । ଚେଷ୍ଟା କଲେ ବଂଚିଯିବ । ଦୋଷ ଥିଲେ କ'ଣ ଏତେ ପଥର ମାଡ଼ ଖାଇ ସେ ବଂଚିଥାନ୍ତା । ନିଶ୍ଚୟ ଏ ନିର୍ଦ୍ଦୋଷ ।

କାନ୍ଧରେ ପକାଇ ସେ ଲୋକଟିକୁ ପୁଅ ଘରକୁ ଆଣିଲା । ସାଙ୍ଗେ ସାଙ୍ଗେ ଡ଼ାକ୍ତରଙ୍କୁ ଡ଼କାଇ ପଠାଇଲା । ଡ଼ାକ୍ତର ଆସିଲେ । ତାଙ୍କର ଫିସ୍ ନେଇ ରୋଗୀକୁ ଭଲ କରିଦେଲେ ।

ଲୋକଟି ଭଲ ହେଲା ପରେ ସେଠାରୁ ଯିବାକୁ ଅମଙ୍ଗ । ସେ କହିଲା – "ସଂସାରରେ ମୁଁ ଏକା । ମୋର ସାଙ୍ଗସାଥି ବନ୍ଧୁବାନ୍ଧବ କେହି ବି ନାହାନ୍ତି । କୁଆଡ଼େ ମୁଁ ଯିବି ଜାଣିନାହିଁ । ଦୟାକରି ମୋତେ ରହିବାକୁ ଦିଅନ୍ତୁ । ମୋର ଛ' ବାକ୍ସ ସୁନା ଅଛି । ସେଥିରେ ତମର ଅଂଶ ରହିଲା । ମୁଁ ମଲେ ସେ ସୁନା ତମର ହେବ । ତମେ ମଲେ ମୁଁ ସବୁ ସୁନା ପାଇବି ।"

ପୁଅ କାହାକୁ ଅବିଶ୍ୱାସ କରେ ନାହିଁ । ତେଣୁ ସେ ଲୋକ କଥାରେ ରାଜି ହୋଇଗଲା । ସେଇଦିନୁ ସେ ଲୋକଟି ସେଇଠି ରହେ । ଅତି ଆପଣାର ଭଳି ବ୍ୟବହାର କରେ । ପୁଅଟି ତା ଉପରେ ଖୁସି । ସନ୍ତୁଷ୍ଟ ।

ଏହା ଭିତରେ କିଛିଦିନ ଚାଲିଗଲା । ଦିନେ ରାଜାଙ୍କ ଘରୁ ସୁନାପୂର୍ଣ୍ଣ ବାକ୍ସ ଚୋରିଯିବା କଥା ସେ ଦେଶର ରାଜା ଜାଣିଲେ । ବହୁ ଉଦ୍ୟମ ହେଲା, ସୁନା ବାକ୍ସ କି ଚୋର କାହାର ସଂଧାନ ମିଳିଲା ନାହିଁ । ଶେଷକୁ ରାଜା ଘୋଷଣା କଲେ – "ଯେ ତାଙ୍କ ସୁନା ପୂର୍ଣ୍ଣ ବାକ୍ସ ଓ ଚୋରକୁ ଧରି ଆଣିଦେବ, ତାକୁ ସେ ମନ୍ତ୍ରୀ କରିଦେବେ ।"

ଏ ଘୋଷଣା ଶୁଣି ପଥର ଢ଼େଲା ମାଡ଼ରୁ ବଂଚିଥିବା ଲୋକଟି ଭାବିଲା ସେ ଯିବ । ରାଜାଙ୍କ ଆଗରେ ତାର ରକ୍ଷାକାରୀ ଚୋରି କରିଥିବା କଥା କହିବ । ରାଜା ତାକୁ ଧରି ନେବେ । ସେ ସୁନା ଛ ବାକ୍ସରୁ ଗୋଟିଏ ବାକ୍ସ ବି ନେବେ । ସେ ଚୋର ବୋଲି ପଥର ମାଡ଼ ଖାଇବ । ସେ ତ ମରିଯିବ । ଚୋରକୁ ଧରାଇ

ଦେଇଥିବାରୁ ସେ ମନ୍ତ୍ରୀ ହେବ । ତାଛଡ଼ା ରାଜା ସିନା ଗୋଟିଏ ବାକ୍ସ ସୁନା ନେବେ, ଆଉ ପାଞ୍ଚ ବାକ୍ସ ସୁନା ସେ ପାଇବ । ସେ ଲୋକଟି ଡ଼େରି ନକରି ରାଜାଙ୍କ ପାଖକୁ ଗଲା । ପୁଅଟି ସୁନା ପୂର୍ଣ୍ଣ ବାକ୍ସ ଚୋରି କରିଥିବା କଥା ରାଜାଙ୍କୁ ଜଣାଇ ଦେଲା ।

ରାଜା ଏ ଲୋକଟିକୁ ଚିହ୍ନିଲେ । ତେଣୁ ପଚାରିଲେ - '' ତୁମେ ତ ଜଣେ ଚୋର । ଅଳ୍ପ ଦିନ ଆଗରୁ ତୁମକୁ ଚୋରିପାଇଁ ଦଣ୍ଡ ଦିଆହୋଇଥିଲା ।

ଲୋକେ ପଥର ଢ଼େଲା ରାସ୍ତା ଉପରେ ତୁମ ଉପରକୁ ପକାଇଥିଲେ ।

''ହଁ ଆଜ୍ଞା । ପଞ୍ଚେ ଯାତ୍ରୀ ଓଟରେ ଯାଉଥିଲେ । ମୁଁ କ୍ଷତ ବିକ୍ଷତ ହୋଇ ପଡ଼ିଥିଲି । ମୋର ପ୍ରାଣ ଯାଇନଥାଏ । ସେମାନେ ଦୟାକରି ମୋତେ ନେଇଯାଇଥିଲେ । ମୁଁ ସେମାନଙ୍କର ଯାହା ଥିଲା, ତାକୁ ଧରି ଚାଲି ଆସିଲି ।''

ରାଜାଙ୍କର ସୈନ୍ୟ ଗଲେ । ଚୋରଟି ସୁନାପୂର୍ଣ୍ଣ ବାକ୍ସ ଗୋଟିଏ ଅଲଗା ଜାଗାରେ ରଖିଥିଲା । ତାକୁ ଘେନି ଆସିଲେ । ରାଜା ସୁନା ପୂର୍ଣ୍ଣ ବାକ୍ସ ଦେଖି ଖୁସି । ସେଇଟା ଚୋରି ହୋଇଥିବା ବାକ୍ସ କି ନୁହେଁ ତାହା ସେ ପରୀକ୍ଷା କଲେ ନାହିଁ । ରାଜା ତାକୁ ମନ୍ତ୍ରୀ କରିଦେଲେ ।

ତାକୁ ରକ୍ଷା କରିଥିବା ଲୋକର ଫେରିବା ବାଟରେ ତା ପାଇଁ ଗୋଟିଏ ଯନ୍ତା ରଖା ହୋଇଥିଲା । ସେଇ ଯନ୍ତାରେ ସେ ପଡ଼ିଗଲା । ସୈନ୍ୟମାନେ ତାକୁ ଧରିନେଲେ । ସେ ସେତେବେଳେ ପଚାରିଲା ମୁଁ କ'ଣ କଲି ଯେ ମୋତେ ବନ୍ଦୀ କରାହେଉଛି ।

ସୈନ୍ୟମାନେ କହିଲେ - ''ତୁ ପୁଣି ପାଟି ଖୋଲୁଛୁ । ରାଜାଙ୍କର ସୁନାପୂର୍ଣ୍ଣ ବାକ୍ସ ଚୋରି କରି ପୁଣି ଏଡ଼େ ବହପ ।

ଲୋକଟି ଜାଣିଲା - ସେ ଯାହାକୁ ରକ୍ଷା କରିଥିଲା, ତାର ଏଇ ଚକ୍ରାନ୍ତ । ସେତେବେଳେ ତାର ବାପର କଥା ମନେ ପଡ଼ିଲା । ତାର ଆଉ ଉପାୟ ନାହିଁ । ଖାଲି ମନେ ମନେ ଭାବୁଥିଲା - ବାପା ଯାହା କହିଥିଲେ, ତାହା ଏକବାର୍ ଠିକ୍ । ସେ ନ ମାନି ଭୁଲ କରିଛି ।

ତାକୁ କିଛି କୁହାଇ ଦିଆଗଲା ନାହିଁ । ତେଣୁ ତାର କୈଫୟତ ପୁଣି ଶୁଣୁଚି କିଏ ?

ରାଜାଙ୍କ ଆଦେଶରେ ତାକୁ ପଡ଼ିଆରେ ଠିଆ କରାଗଲା । ଲୋକମାନେ ଚାରିପଟୁ ତା ଉପରକୁ ପଥର ଫିଙ୍ଗିଲେ । ସେ ଅଶେଷ ଯନ୍ତ୍ରଣା ପାଇଲା । ତାର ଚେତା ବୁଡ଼ିଗଲା । ଲୋକମାନେ ଯେ ଯାହାର ଚାଲିଗଲେ । ସେଇଠି ସେ ପଡ଼ିଥାଏ । ମୁର୍ଦ୍ଦାର ପରି । ଯମ ଓ ତା ଭିତରେ ଟଣାଓଟରା ଚାଲିଥାଏ ।

ସବୁଦିନ ଯେତେବେଳକୁ ତାର ଘରକୁ ଫେରିବା କଥା, ସେ ଆଉ ଫେରିଲା ନାହିଁ । କପୋତ ଓ ସାପ ତ ସବୁଦିନେ ଆସନ୍ତି । ତାକୁ ଦେଖାକରି ଚାଲିଯାନ୍ତି । ସେଦିନ ସାପ ଓ କପୋତ ଅପେକ୍ଷା କରି କରି ବେଳ ଆଖର ହେଲା । ତଥାପି ତାର ଦେଖା ନାହିଁ । ଭୟଙ୍କର ସଂଦେହ ହେଲା । ସାପ ପଚାରିଲା - ''କଣ ହେଲା ?''

''ମୁଁ କେମିତି ଜାଣିବି'' କପୋତର ଉତ୍ତର ଥିଲା ।

ସାପ କହିଲା - ''ସହର ଯାକ ଉଡ଼ିକରି ଦେଖ, ଖୋଜ । ତାକୁ ଦେଖିଲେ, ମୋତେ ଆସି ଖବର ଦେବୁ ।''

କପୋତଟି ସାପ କଥା ମାନି ଉଡ଼ି ଚାଲିଗଲା, ଖୋଜି ଖୋଜି ବଣିକର ପୁଅ ଯେଉଁଠି ପଡ଼ିଥିଲା, ସେଠି ପହଞ୍ଚିଗଲା । କପୋତକୁ ଦେଖି ବଣିକର ପୁଅ ପାଣିଟିକେ ହାତ ଠାରି ମାଗିଲା । କପୋତଟି ଉଡ଼ିଗଲା । ଗୋଟିଏ ଛୋଟ ଜାଗାଟିରେ ଟିକିଏ ପାଣି ଧରି ଉଡ଼ି ଆସିଲା । ତାପରେ ବହୁବାର ପାଣି ଆଣିଲା ପରେ ପୁଅଟି ସେତକୁ ପରି ଆଶ୍ୱସ୍ତ ହେଲା । ଉପରେ ସେ ପୁଣି ଉଡ଼ିଯାଇ ଖାଇବା ଜିନିଷ କିଛି ଆଣିଲା । ପୁଅକୁ ଦେଲା । ସେ ସେତକ ଖାଇବାରୁ ତାକୁ ଟିକିଏ ଭଲ ଲାଗିଲା ।

କପୋତଟି ତାପରେ ଉଡ଼ିଯାଇ ସାପକୁ ଏ ଖବର ଦେଲା । ସାପଟି ତାର ପ୍ରାଣରକ୍ଷାକାରୀକୁ ଦେଖିବାକୁ ଉଚ୍ଛନ୍ନ । କେଉଁଠି ବଣିକର ପୁଅ ପଡ଼ିଛି, କପୋତ କହିଦେଲା । ସାପଟି ସିଧା ଗଲା ତା ପ୍ରାଣ ରକ୍ଷାକର୍ତ୍ତା ପାଖକୁ । ତାର ଅବସ୍ଥା ଦେଖି ଖୁବ୍ ଦୁଃଖିତ । ଯାହାକୁ ସାପ ପାଟିରେ ଧରିବ, ସେ ବିଷ ହୋଇଯିବ । ସେଥିପାଇଁ ସେ ବଣିକର ପୁଅ ପାଇଁ କିଛି ଆଣିଲା ନାହିଁ । ତାକୁ ଜଗି ରହିଲା । ଏଣେ କପୋତଟି ବଣିକ ପୁଅର ଖାଇବା ପିଇବା ବୁଝେ ।

ବଣିକ ପୁଅ ଟିକିଏ ସୁସ୍ଥ ହେଲାଣି । କିନ୍ତୁ ଉଠି ଯିବାଆସିବା କରିବାର ଶକ୍ତି କି ସାମର୍ଥ୍ୟ ତାର ନଥିଲା । ଲୋକମାନେ ଦେଖିଲେ – ସେ ଜୀବିତ । ତେଣୁ ସେ ଦୋଷୀ ନୁହେଁ । ଏହାହିଁ ତାଙ୍କର ଧାରଣା । ସେଥିପାଇଁ ତା ସାଥିରେ କେତେବେଳେ ବା କିଏ ଦୁଃଖ ସୁଖ ହୁଅନ୍ତି ।

ଏହା ଭିତରେ ସାପ ଦିନେ ଚାଲିଗଲା । ରାଜା ଝିଅ ଦେହରେ ଗୁରାଇ ହୋଇଗଲା । ଯେ ତା ପାଖକୁ ଆସିଲା, ଫଣାଟେକି ଫଁ ଫଁ ହେଲା । ରାଜା ଝିଅର ଖାଇବା ପିଇବା ବନ୍ଦ୍ । ସେ ଖାଲି ବିକଳ ହୋଇ କାନ୍ଦିଲା । ଝିଅର ଏ ଅବସ୍ଥା ଦେଖି ରାଜାଙ୍କର ବୁଦ୍ଧିବଣା ହୋଇଗଲା । କବିରାଜ, ଡ଼ାକ୍ତର ଓ ଗୁଣିଆ ଯେ ଯେଉଁଠି ଥିଲେ ଆସିଲେ । କିନ୍ତୁ ସାପକୁ କେହି ସେଠୁ ନେଇ ପାରିଲେ ନାହିଁ । ସାପକୁ ମାରିବା ପାଇଁ ପିଟିବାକୁ ହେଲେ ରାଜା ଝିଅକୁ ପିଟିବାକୁ ହେବ । ହୁଏତ ସେ ବି ମରିଯିବ । ତେଣୁ ସାପକୁ ସେପରି ମାରିବା ନିରାପଦ ନଥିଲା । ଦିନକୁ ଦିନ ରାଜା ଝିଅ ନଖାଇ ନପିଇ ଦୁର୍ବଳ ହୋଇପଡ଼ିଲା । ସେ ଶେଷକୁ ମରିବା ଅବସ୍ଥାକୁ ଆସିଗଲା । ରାଜା ଆଉ ନିଜେ ସମ୍ଭାଳି ପାରିଲେ ନାହିଁ । ସେ ଘୋଷଣା କଲେ – ''ମୋ ଝିଅକୁ ଯେ ଉଦ୍ଧାର କରିନେବ ମୁଁ ତାକୁ ଝିଅକୁ ବିବାହ ଦେବି ଓ ରାଜ୍ୟରୁ ଅଧେ ଦେବି ।''

ଏ ଖବର ଲୋକେ ଚାରିଆଡ଼େ ଗପିଲେ । ବଣିକ ପୁଅଟି ସେଇମିତି ପଡ଼ିଆରେ ତ ପଡ଼ିଥାଏ । ତା କାନରେ ଏ ଖବର ପହଞ୍ଚିଲା । ତାକୁ ଯେ ଖବର ଦେଲା, ତାକୁ ସେ କହିଲା – ''ରାଜାଙ୍କୁ ଖବର ଦିଅ । ମୁଁ ରାଜା ଝିଅକୁ ଏ ବିପଦରୁ ରକ୍ଷା କରିଦେବି ।''

ସେ ଲୋକ ସାଙ୍ଗେ ସାଙ୍ଗେ ରାଜାଙ୍କୁ ଖବର ଦେଲା । ରାଜା ଜାଣିଲେ ଯେ ଲୋକଟି ଟେକା ମାଡ଼ରେ ମରିନାହିଁ । ତେଣୁ ସେ ନିର୍ଦ୍ଦୋଷ । ସେଥିପାଇଁ ତାକୁ ତାଙ୍କ ପାଖକୁ ନେଇଯିବାକୁ ଆଦେଶ ଦେଲେ ।

ରାଜାଙ୍କର ହୁକୁମ୍ ପାଇ ଲୋକଟି ଉଠିଲା, ଧୁଆଧୋଇ ହେଲା, ଭଲ ପୋଷାକ ପିନ୍ଧିଲା । ତା'ପରେ ରାଜା ତାକୁ ନେଇ ଝିଅ ପାଖକୁ ଗଲେ । ସେଠି ସାପଟି ସୁ ସୁ ହୋଇ ଗର୍ଜନ କରୁଥିଲା । ସେଠା ପାଖ କେହି ମାଡ଼ିଲେ ସେ ଭୟଙ୍କର ହୋଇ ଉଠୁଥିଲା । କେହି ଭୟରେ ତା ପାଖ ମାଡୁ ନଥାନ୍ତି ।

ରାଜାଙ୍କ ସାଥିରେ ଲୋକଟି ଯାଇ ସାପଟିକୁ ଦେଖିଲା । ତାପରେ ସେ ତାର ରୁମାଲଟି ବାହାର କଲା । ସାପଟି ଆପେ ଆପେ ରାଜାଝିଅ ପାଖରୁ ଚାଲିଆସି ରୁମାଲରେ ଚେକା ହୋଇ ଶୋଇଲା । ଲୋକଟି ତାକୁ ନିଜ ପକେଟରେ ପୂରାଇଲା ।

ରାଜା ଆଶ୍ଚର୍ଯ୍ୟ, ବିସ୍ମିତ । ତେଣୁ ସେ ଲୋକଟିକୁ ପଚାରିଲେ – ''ତମେ କିପରି ଏ କଥା କରିପାରିଲ ?''

ଲୋକଟି ରାଜାଙ୍କ ଠାରୁ ବିଦାୟ ମାଗି କହିଲା – ''ମୋର ଅପର୍ଯ୍ୟାପ୍ତ ସମ୍ପତ୍ତି ଅଛି । ମୁଁ ଆପଣଙ୍କଠାରୁ କୌଣସି ସାହାଯ୍ୟ ଚାହେଁ ନାହିଁ ।

''ତୋ ଜୀବନକୁ ପାଣିଛଡ଼ାଇ ଏପରି କିପରି କଲୁ ମୋତେ ଆଗ ବୁଝା । ନଇଲେ ତୁ ଏଠାରୁ ଯାଇ ପାରିବୁ ନାହିଁ । ଏହା ଥିଲା । ରାଜାଦେଶ ।

ଶେଷରେ ଲୋକଟି କହିଲା – ''ମହାରାଜ, ଆପଣ ସୁନା କଥା ପରୀକ୍ଷା କରିନାହାନ୍ତି । ଆସନ୍ତୁ ଆପଣଙ୍କୁ ଯେପରି ବାକ୍ସଟିଏ ସୁନା ଦିଆ ହୋଇଛି । ଠିକ୍ ସେମିତି ପାଞ୍ଚ ବାକ୍ସ ସୁନା ମୋ ଘରେ ଅଛି । ତା ଛଡ଼ା କପୋତଟିଏ ବି ଅଛି ।''

ରାଜା ନିଜେ ବିଜେ କଲେ । ଲୋକଟି ଯାହା କହୁଥିଲା ତାହା ସତ୍ୟ ବୋଲି ଉପଲବ୍ଧି କଲେ । ସାଥି ସାଥି ରାଜା ନୂତନ ମନ୍ତ୍ରୀଙ୍କୁ ଆସିବାକୁ ଆଦେଶ ଦେଲେ । ମନ୍ତ୍ରୀ ଆସି ରାଜାଙ୍କ ପାଖେ ତାର ଉଦ୍ଧାରକର୍ତ୍ତାଙ୍କୁ ଦେଖିଲା । ସେ ଯାହା ରାଜାଙ୍କୁ କହିଛନ୍ତି ସେ ସବୁ ଶୁଣିଲା । ସେ ଛାନିଆ, ଭୟଙ୍କର ଭାବରେ ଡ଼ରିଗଲା । ସେ ଥର ଥର ହୋଇ ରାଜାଙ୍କୁ କହିଲା– ''ସେ ଯାହା କହୁଛନ୍ତି ତାହା ଏକାନ୍ତ ସତ୍ୟ । ମନ୍ତ୍ରୀ ପଦ ଲାଳସାରେ ମୁଁ ମିଥ୍ୟାର ଆଶ୍ରିତ । ମୋତେ କ୍ଷମା କରନ୍ତୁ । ରାଜା ଅଗ୍ନିଶର୍ମା ଗର୍ଜିଉଠିଲେ । ଏହା କ'ଣ ତମ ପ୍ରକୃତିର ଏକ ଦୃଷ୍ଟାନ୍ତ ? ଯେ ତମର ଜୀବନ ରଖିଲା ତାକୁ ତୁମେ ମାରିବା ପାଇଁ ବ୍ୟବସ୍ଥା କଲ । ତୁମେ କୃତଘ୍ନ ।'' ତାପରେ ରାଜା ନୂତନ ମନ୍ତ୍ରୀଙ୍କୁ ଅପରାଧୀ ବୋଲି ସାବ୍ୟସ୍ତ କଲେ । ଏଥର ତାଙ୍କୁ ରାସ୍ତା ଉପରକୁ ନିଆଗଲା । ଲୋକେ ଢ଼େଲା ପକାଇବାକୁ ଲାଗିଲେ । ଏହି ଢ଼େଲା ମାଡ଼ରେ ଲୋକଟିର ମୃତ୍ୟୁ ହେଲା ।



# ଆତିଥ୍ୟର ପୁରସ୍କାର

ବହୁଦିନ ତଳେ ଜଣେ ସୁଲତାନ ଥିଲେ । ତାଙ୍କ ଶାସନରେ ପ୍ରଜାମାନେ କିପରି ଅଛନ୍ତି, ସେ ଜାଣିବାକୁ ଆଗ୍ରହୀ । ଏ ବିଷୟରେ କର୍ମଚାରୀମାନଙ୍କ ଉପରେ ନିର୍ଭର କରିହେବନାହିଁ । ସୁଲତାନ୍ ପ୍ରଜାଙ୍କ ଖବର ନିଜେ ଜାଣିବାକୁ ଚାହିଁଲେ ବି କେହି ତାଙ୍କୁ ଠିକ୍ କଥା କହିବେ ନାହିଁ । ତେଣୁ ଛଦ୍ମବେଶରେ ଗଲେ କଥାଟା ଜଣାପଡ଼ିବ । ସେଥିପାଇଁ ସେ ଛଦ୍ମବେଶରେ ମନ୍ତ୍ରୀଙ୍କୁ ସାଥିରେ ଧରି ବାହାରିଲେ ।

ଯାତ୍ରାର ପ୍ରଥମ ଦିନ । ସେତେବେଳକୁ ଦ୍ୱି ପ୍ରହର । ସୁଲ୍‌ତାନଙ୍କୁ ଭାରି ଶୋଷ । ପାଖରେ ଥିବା ଗୋଟିଏ କୁଡ଼ିଆ ପାଖରେ ଅଟକିଲେ । କବାଟ ବାଡ଼େଇବାରୁ ଚାଷୀଟିଏ ପଦାକୁ ଆସିଲା । ରୂପଭେକରୁ ସେ ଜଣେ କ୍ଷୁଦ୍ର ଚାଷୀ, ଏହା ଜଣାପଡୁଥିଲା । ସୁଲ୍‌ତାନ୍ ପିଇବା ପାଇଁ ତାକୁ ପାଣି ଗିଲାସେ ମାଗିଲେ । ଚାଷୀଟି କହିଲା - ''ଆପଣ ଅତିଥି । ଭଗବାନଙ୍କର ଆର୍ଶୀବାଦ । ଘର ଭିତରକୁ ଆସିବା ହୁଅନ୍ତୁ । ଏଠି ଭୋଜନ ବି କରନ୍ତୁ ।''

ସୁଲ୍‌ତାନ୍ ଓ ତାଙ୍କ ମନ୍ତ୍ରୀ କୁଡ଼ିଆ ଭିତରେ ପଶିଲେ । ଚଟାଣରେ ବସିପଡ଼ିଲେ । ଚାଷୀଟି ତାର ବଗିଚାକୁ ଗଲା । ଡ଼ାଳିମ୍ବଟିଏ ଆଣିଲା । ତାକୁ ରସ କଲା । ପୁରା ଗିଲାସଟିଏ ରସ ହେଲା । ତାପରେ ସୁଲତାନଙ୍କ ହାତକୁ ସେ ରସକୁ ବଢ଼ାଇ ଦେଲା । ସୁଲ୍‌ତାନ ସେତକ ପିଇ ଆତ୍ମସନ୍ତୋଷ ଅନୁଭବ କଲେ । ମନେ ମନେ ଭାବିଲେ - ସେ ଏ ଦେଶର ରାଜା । ତାଙ୍କ ଉଆସରେ ବହୁ ପାନୀୟର ସମାହାର । ଏପରି ପାନୀୟ କିନ୍ତୁ ନାହିଁ । ସେମାନେ ଭୋଜନ କରିସାରିବା ପରେ ବିଦାୟ ନେଲେ । ଚାଷୀଟିର ଦୟା ଯୋଗୁ ଉପସ୍ଥିତ ପ୍ରଶଂସା କରିବାକୁ ଛାଡ଼ିଲେନାହିଁ । ତାପରେ ପୁଣି ତାଙ୍କ ଯାତ୍ରାରେ ବାହାରି ଗଲେ ।

ଏହା ଭିତରେ କିଛି ଦିନ ଚାଲିଗଲା । ପୁଣି ସେଇ ଦୁଇଜଣ ଅତିଥି ଚାଷୀଟି ଦୁଆରେ ହାଜର । ଚାଷୀଟି ତାଙ୍କୁ ଚିହ୍ନିଲା, ବଗିଚାକୁ ଯାଇ ଗୁଡ଼ିଏ ଡ଼ାଳିମ୍ବ ଧରି ଆସିଲା । ଗୋଟିଏ ଡ଼ାଳିମ୍ବ ରସରେ ଗୋଟିଏ ଗିଲାସର ମାତ୍ର ଚଉଠେ ପୁରିଲା । ଆଉ ତିନୋଟି ଡ଼ାଳିମ୍ବ ରସ କରି ଗିଲାସେ ରସ ସେ ସୁଲତାନଙ୍କୁ ଦେଲା । ସୁଲତାନ ଦେଖିଲେ - ଏ ରସ ପୂର୍ବରସ ପରି ସ୍ୱାଦୁ ନୁହେଁ । ଏହା

ଭିନ୍ନ । ଅଲଗା । ତେଣୁ ସୁଲତାନ୍ ପଚାରିଲେ "କଥା କ'ଣ ? ଆଗ ଡ଼ାଳିମ୍ବ କଣ ତମ ବଗିଚାରେ ନାହିଁ ।"

ଚାଷୀଟି କହିଲା - ଏ ସେଇ ଡ଼ାଳିମ୍ବ । କିନ୍ତୁ ଏ ଡ଼ାଳିମ୍ବରୁ ପୂର୍ବପରି ରସ ଆଉ ବାହାରୁ ନାହିଁ କି ସେପରି ସ୍ୱାଦଯୁକ୍ତ ବି ହେଉନାହିଁ । ଏହାର କାରଣ ଏ ଦେଶର ରାଜା, ସେ ଅଧିକ ଟିକସ ବସାଇ ଚାଷୀଙ୍କୁ ଶୋଷୁଛନ୍ତି । ଦିନକୁ ଦିନ ଚାଷୀ ଗରିବ ହେବାକୁ ବସିଛି । ମୁଁ ଆଗଭଳି ଆଉ ନାହିଁ । ମୁଁ ବି ଦରିଦ୍ର ହୋଇଗଲିଣି ।" ତାପରେ ସେ ସୁଲ୍‌ତାନଙ୍କୁ ଅଭିଶାପ ଦେବାକୁ ଲାଗିଲା ।

ଚାଷୀଟିର ଅଭିଯୋଗ ଓ ଅଭିଶାପ ସୁଲତାନ ଶୁଣିଲେ । ଚାଷୀମାନଙ୍କ ପାଇଁ ପ୍ରତିକାର କରିବାକୁ ହେବ । ଏହା ତ ସମୟ ସାପେକ୍ଷ । ଏବେ ଚାଷୀଟିକୁ ସାହାଯ୍ୟ କରିବାକୁ ହେବ । ଏହା ଭାବି ସୁଲ୍‌ତାନ ଖଣ୍ଡେ କାଗଜରେ କିଛି ଲେଖି ଚାଷୀଟିକୁ ଧରାଇ ଦେଲେ । ତା ପରେ କହିଲେ - " ଏଥିରେ ମୋର ଠିକଣା ଲେଖା ଅଛି । ସହରକୁ ଆସିଲେ, ଏ ଚିପା ଯାହାକୁ ଦେଖାଇବୁ ସେ ମୋ ରହିବା ଜାଗା ଦେଖାଇ ଦେବ । ତୁ ସହରକୁ ଆସିଲେ ତୋତେ କାମଟିଏ ଯୋଗାଇବାରେ ମୁଁ ସାହାଯ୍ୟ କରିବି ।"

ଚାଷୀଟି ଲେଖାଟି ପକେଟରେ ରଖିଲା । ଚାଷୀର ଭାଗ୍ୟ ପରିବର୍ତ୍ତନ ଆଗକୁ ଭଲ ହେଲା ନାହିଁ । ଶେଷକୁ ଅବସ୍ଥା ଅସମ୍ଭାଳ । ସେ ଏବେ ଉପାୟହୀନ । ଜମିବାଡ଼ି ଘରଦ୍ୱାର ବିକି ସେ ସହରକୁ ପଳାଇ ଆସିଲା । ସେଠି କାମଟିଏ ଖୋଜି ପେଟ ପୋଷିବା ତାର ଉଦ୍ଦେଶ୍ୟ । ଏତିକିବେଳେ ବୁଢ଼ଟି ଅତିଥି ଦେଇଥିବା ଲେଖା କଥା ତାର ମନେ ପଡ଼ିଲା । ସେ ସହରରେ ଗୋଟିଏ ପୋଲିସକୁ ସେ ଲେଖା ଦେଖାଇଲା । ଲେଖାଟି ଦେଖି ପୁଲିସ ଆଶ୍ଚର୍ଯ୍ୟ, ବିସ୍ମିତ । ଏ ଯେ ଖୋଦ୍ ସୁଲ୍‌ତାନଙ୍କର । ଅଥଚ ସେ ଚାଷିଟିକୁ ଏ ବିଷୟ ପଦେବି କିଛି କହିଲା ନାହିଁ ।

ସେ ଚାଷୀଟିକୁ ସୁଲ୍‌ତାନଙ୍କ ଉଆସ ପାଖକୁ ପଠାଇ ଦେଲା । ଚାଷୀଟି ମୁଖ୍ୟ ଦରଜା ବାଟେ ଉଆସକୁ ଯିବାକୁ ଉଦ୍ୟମ କରିବାରୁ ଦ୍ୱାରରକ୍ଷୀ ତାକୁ ଅଟକାଇଲା । ଚାଷୀଟି ମନା ମାନିବାକୁ ନାରାଜ ।

ମୁଖ୍ୟଦ୍ୱାର ଦେଶରେ ଅସ୍ୱାଭାବିକ ପରିସ୍ଥିତି ସୁଲ୍‌ତାନଙ୍କ ନଜରକୁ ଆସିଲା । ସେ ଝରକା ବାଟେ ପଦାକୁ ଚାହିଁଲେ । ସେଠି ଚାଷୀଟି ଠିଆ

ହୋଇଥିଲା । ସେ ଦେଖିଲେ । ତାକୁ ଉଆସକୁ ଆଣିବାକୁ ଆଦେଶ ହେଲା । ସେତେବେଳେ ଚାଷୀଟି ହୃଦୟଙ୍ଗମ କଲା ଯେ ତାର ଅତିଥି ନିଜେ ସୁଲତାନ୍ । ତାଙ୍କୁ ସେ ଅଭିଶାପ ଦେଇଥିଲା । ସେଥିପାଇଁ ସେ ଲଜ୍ଜିତ ହୋଇଗଲା ।

ସୁଲ୍‌ତାନ କହିଲେ "ମୁଁ ତୁମକୁ କାମ ଯୋଗାଇ ଦେବି ବୋଲି ପ୍ରତିଶ୍ରୁତି ଦେଇଥିଲି । ତୁମେ ଏଠି ମାଳି କାମ କର । ଭଲ କାମ କଲେ ଦରମା ବୃଦ୍ଧି ହେବ ।"

ଚାଷୀଟି କାମଟିଏ ପାଇ ଆନନ୍ଦ । ତାଛଡା ମାଳୀକାମ ତାକୁ ବେଶ୍ ଆରେଇବ । ସେ ତ ସେଥିରେ ଅଭ୍ୟସ୍ତ । ଏ କାମରେ ସେ ପାଇବ ତୃପ୍ତି ଓ ଆନନ୍ଦ । ସେ ସୁଲ୍‌ତାନଙ୍କ ଦୟା ଯୋଗୁଁ ଧନ୍ୟବାଦ ଜଣାଇଲା ।

ଚାଷୀଟି କାମ ଆରମ୍ଭ କରିବା ପୂର୍ବରୁ ସୁଲ୍‌ତାନ ତାକୁ କଫି ଖାଇବାକୁ ନିମନ୍ତ୍ରଣ କଲେ । ସେ ତ କଫି କଣ ଜାଣିନଥିଲା । ସେ ତାକୁ ଏକ ନିଶ୍ୱାସକେ ପିଇଦେଲା । ଫଳରେ ତାର ଓଠ ଓ ଜିଭ ସିଝିଗଲା । ତାର ଅନ୍ୟ ଖାଦ୍ୟ ଖାଇବାରେ ତୃପ୍ତି ବି ଆସିଲା ନାହିଁ ।

ଚାଷୀଟି ଉଦ୍ୟମୀ । ମାଳି କାମ ତ କରେ । ତା ପାଠ ପଢିବାରେ ସେ ମନ ଦେଲା । ବର୍ଷୁଟିଏ ଭିତରେ ସେ ବେଶ୍ ଲେଖାପଢି ଶିଖିଗଲା । ସୁଲ୍‌ତାନ ଏ ଖବର ରଖୁଥାନ୍ତି । ଦିନେ ସୁଲ୍‌ତାନ ତାକୁ ଡାକି କହିଲେ- "ତମ କାମରେ ମୁଁ ସନ୍ତୁଷ୍ଟ । ତୁମେ ଲେଖା ପଢା ଜାଣିଥିବାର ଖବର ମୋ ପାଖରେ ଅଛି । ମୁଁ ତମକୁ ବନ୍ଦର ତଦାରଖ ହିସାବରେ ନିଯୁକ୍ତି ଦେଲି । ବନ୍ଦରକୁ କେତେ ଜାହାଜ କ'ଣ ନେଇ ଆସୁଛି ଆଉ କେତେ ଜାହାଜ କ'ଣ ନେଇ ଗଲା ତା'ର ତାଲିକା ରଖିବ । ପ୍ରତିଦିନ ସଂଧ୍ୟାବେଳେ ମୋତେ ଏଇ ସଂକ୍ରାନ୍ତରେ ଲିଖିତ ବିବରଣୀ ଦେବ ।

ଚାଷୀଟି ତାର କାମ ବନ୍ଦରରେ ଆରମ୍ଭ କଲା । ସେ ଏହାକୁ ଅତ୍ୟନ୍ତ ନିଷ୍ଠାର ସହିତ କରୁଥିଲା । ଫଳରେ ସେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ ବି କଲା । ଏବେ ତାର କାମ ଆଉ ବଢ଼ି ଯାଇଛି । କେଉଁ ଜାହାଜ ବନ୍ଦରରେ ପଶିବ କି ନାହିଁ ସେ ବିଷୟରେ ସେ ନିଷ୍ପତ୍ତି ନେବାର କ୍ଷମତା ପାଇଛନ୍ତି ।

ଦିନେ କଫି ଜାହାଜଟିଏ ବନ୍ଦରକୁ ପଶିବାକୁ ଅନୁମତି ଲୋଡ଼ିଲା । କଫି ଖାଇଲେ ଓଠ ଓ ଜିଭ ସିଝିଯାଏ । ଏ ହେଲା ତାର ଅଭିଜ୍ଞତା । ଏ ଯେ ଏକ ମାରାତ୍ମକ ପାନୀୟ ଏହା ହିଁ ତାର ଧାରଣା । ତେଣୁ ସେ କଫି ଜାହାଜ ବନ୍ଦରରେ ପଶିବାକୁ ମନା କରିଦେଲା । ଯେତେଥର କଫି ଜାହାଜ ଆସିଲା, ସିଏ ସବୁ ବନ୍ଦରରେ ନପଶି ଫେରିଯିବାକୁ ବାଧହେଲେ । ଯେତେପ୍ରକାର ଗୁହାରୀ ଓ ଚାପ ଚାଷୀ ଉପରେ ପକାଗଲା ସେ ସବୁ ନିରର୍ଥକ । ଏହାହିଁ ଲୋକଙ୍କର ଧାରଣା । ଫଳରେ କଫିର ଦର ବହୁତ ବଢ଼ିଗଲା । ବେଳେବେଳେ କଫିବି ମିଳିଲା ନାହିଁ ।

ଲୋକେ ଏଥର ଅତିଷ୍ଠ । ବାଧହୋଇ ସୁଲ୍‌ତାନଙ୍କ ପାଖରେ ଆପତ୍ତି ହେଲା । ସୁଲ୍‌ତାନ ସବୁ ଶୁଣିଲେ । ଲୋକମାନଙ୍କୁ କିଛି ଜବାବ ଦେଲେନାହିଁ ।

ସୁଲ୍‌ତାନ ଚାଷୀକୁ ଡକାଇ ପଠାଇଲେ । ତୁର୍କି ଲୋକଙ୍କର ଅତି ପ୍ରିୟ ପାନୀୟ କପେ କଫି ଚାଷୀକୁ ପିଇବାକୁ ଦେଲେ । ଚାଷୀଟିର କଫି ପିଇବାର ଆଗରୁ ଅଭିଜ୍ଞତା ଅଛି । ତେଣୁ କଫି ପିଇବାର ଆଗ୍ରହ ନଥିଲା । ସେ କଥା ସୁଲ୍‌ତାନ ଅନୁଭବ କଲେ । ତେଣୁ ସୁଲତାନ୍ ତାକୁ କହିଲେ, ଏହା ଏକ ଉତ୍ତମ ପାନୀୟ । ଏହାକୁ ଧିରେ ଧିରେ ଅଳ୍ପ ଅଳ୍ପ କରି ପିଇଲେ ଭାରି ଭଲଲାଗେ । ଏଥର ମୁଁ ଯେମିତି କହିଲି ସେଇମିତି ପିଅ । ଚାଷୀଟି ସୁଲ୍‌ତାନଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କଲା । ପ୍ରକୃତରେ ଏହା ଏକ ମଧୁର ପାନୀୟ । ଏହା ସେ ହୃଦୟଙ୍ଗମ କଲା ତା ଛଡ଼ା ଏହାର ବାସ୍ନା ଚମତ୍କାର । ଉପଭୋଗ୍ୟ । ଏବେ ସେ ବୁଝିଲା- ଲୋକେ କଫିପାଇଁ କାହିଁକି ପାଗଳ ? ସୁଲ୍‌ତାନଙ୍କର କଫି ପ୍ରତି କାହିଁକି ଏତେ ମମତା ।

ସେଇଦିନୁ ବନ୍ଦରକୁ କଫି ଜାହାଜ ଆସିଲେ, ତାର ଅନୁମତି ନ ପାଇବାର ପ୍ରଶ୍ନ ନାହିଁ । ବରଂ ସେ ଖବର ପାଇଲେ ଖୁସିହୁଏ, ଆନନ୍ଦରେ ଅନୁମତି ଦିଏ ।



# ଖଣ୍ଡା କାଠ ହେଲା

ସାହା ଆବାସ୍ ଜଣେ ନ୍ୟାୟ, ନୀତି ଓ ନିଷ୍ଠାପ୍ରିୟ ରାଜା । ପ୍ରଜାମାନଙ୍କ ଅବସ୍ଥା ଦେଖିବା ପାଇଁ ପ୍ରତିଦିନ ସଂଧ୍ୟା ପରେ ସେ ଘରୁ ବାହାରି ଯାଆନ୍ତି । ସେ ଫକିର (ମୁସଲମାନମାନଙ୍କ ସନ୍ୟାସୀ) ବେଶରେ ସହରର ଅଳିକନ୍ଦି ଘୁରି ବୁଲନ୍ତି । ସହର ଉପକଣ୍ଠକୁ ଯାନ୍ତି । ଲୋକଙ୍କ ସାଥିରେ ଏପରି ଭାବରେ ମିଶି ଯାଆନ୍ତି ଯେ, ସେ ତାଙ୍କ ଭିତରେ ଜଣେ ବୋଲି ଜଣାପଡ଼େ । ସେ ସେମାନଙ୍କର ଦୁଃଖ ସୁଖରେ ଅଂଶୀଦାର ହୋଇଯାନ୍ତି ।

ଦିନେ ସେ ତାଙ୍କର ଅଭ୍ୟସ୍ତ ରାସ୍ତାରେ ଗଲାବେଳେ ଦୂରରୁ ଗୋଟିଏ ଆଲୁଅ ମିଞ୍ଜି ମିଞ୍ଜି ହୋଇ ଜଳୁଥିବାର ଦେଖିଲେ । ସେ ସେଇ ରାସ୍ତାରେ ଗଲେ । ଗୋଟିଏ କୁଡ଼ିଆ ପାଖରେ ପହଞ୍ଚି ଗଲେ । କୁଡ଼ିଆଟିରେ ଗୋଟିଏ ଲୋକ ବସିଥିଲା । ଆଗରେ ତାର ବଢ଼ା ହୋଇଥିବା ଖାଦ୍ୟ । ଲୋକଟି ବେଶ୍ ଉତ୍ଫୁଲ୍ଲ । ଆନନ୍ଦରେ ସେ ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲା । ସାହା ଆବାସ୍ ସେ କୁଡ଼ିଆ ଦୁଆର ମୁହଁରେ ପଚାରିଲେ- " ମୁଁ ଜଣେ ଅତିଥି । ଭିତରକୁ ଯାଇ ପାରେକି ?"

"ଅତିଥି ତ ଭଗବାନଙ୍କ ଆର୍ଶୀବାଦ । ଆସନ୍ତୁ, ଏଠି ବସନ୍ତୁ । ଖାଦ୍ୟ ବଢ଼ା ହୋଇଛି । ଅଂଶୀଦାର ବି ହୁଅନ୍ତୁ ।" ଉତ୍ତର ଆସିଲା ।

ସାହା ଆବାସ କିଛି ନକହି ସିଧା ଯାଇ ସେ ଲୋକ ପାଖରେ ବସିଲେ । ଲୋକଟି ତାଙ୍କୁ ଖୁଆଇଲା । ସେଥିରେ ତାର କି ଆନନ୍ଦ ! କେଡ଼େ ଖୁସି ସେ ! ସାହା ଆବାସ୍ ଅନୁଭବ କଲେ । ତା'ପରେ ବିନା ସଙ୍କୋଚରେ ବହୁ ବିଷୟରେ ବହୁ କଥା କହିଲା । ସାହା ଆବାସ୍ ସବୁ ଶୁଣି ତାଙ୍କୁ ପଚାରିଲେ- "ତମର ଧନ୍ଦା କ'ଣ ? ବଞ୍ଚିବା ପାଇଁ ତୁମେ କ'ଣ କର ?"

"ମୁଁ ଜଣେ ମୋଚି । ସକାଳୁ ବାହାରି ଯାଏ । ଦିନଯାକ ସହରରେ ବୁଲେ । ଜୋତା ମରାମତି କରେ । ସଂଧ୍ୟା ପୂର୍ବରୁ ଫେରିଆସେ । ଯାହା ରୋଜଗାର କରେ ସେଥିରେ ଖାଦ୍ୟ କିଣିନିଏ । ତାକୁ ହିଁ ଖାଏ ।" ଲୋକଟିର ଏହା ଥିଲା ଉତ୍ତର ।

ସାହା ଆବାସ୍ ପଚାରିଲେ- "ଆସନ୍ତା କାଲି ପାଇଁ ?"

ମୋଚିଟି ଟିକିଏ ସାହା ଆବାସ୍ ଆଡ଼କୁ ଅନାଇଲା । ତା ପରେ କହିଲା- ''ଭଗବାନଙ୍କ ଆଶୀର୍ବାଦ ।''

ସେଠି ବସି ସାହା ଆବାସ୍ କଥାବାର୍ତ୍ତା ବେଶ୍ ଉପଭୋଗ କଲେ । ପରଦିନ ନିଶ୍ଚୟ ଆସିବାର ପ୍ରତିଶ୍ରୁତି ଦେଇ ଘରକୁ ଫେରିଲେ । ତା'ପରଦିନ ସକାଳୁ ରାଜାଙ୍କ ଘୋଷଣା ପ୍ରକାଶ ପାଇଲା । ସେଇ ଦିନୁ ରାଜ୍ୟରେ ମୋଚିକାମ ନିଷେଧ କରାଗଲା ।

ପରଦିନ ସଂଧ୍ୟାରେ ସାହା ଆବାସ୍ ମୋଚି ପାଖକୁ ଗଲେ । ସେତେବେଳକୁ ମୋଚିଟି ତାର ବଢ଼ା ହୋଇଥିବା ଖାଦ୍ୟ ପାଖରେ ବସିଥିଲା । ମନରେ ତାର ପୂର୍ବ ଦିନଭଳି ଆନନ୍ଦ । ଏହା ଦେଖି ସାହା ଆବାସ୍ ଆଶ୍ଚର୍ଯ୍ୟ । ସାହା ଆବାସ୍‌ଙ୍କର ଆଉ ଅନୁମତି ନେବାର ଆବଶ୍ୟକତା ନଥିଲା । ସେ ଗଲେ । ସିଧାଯାଇ ମୋଚିଟି ପାଖରେ ବସିଲେ । ତା ପରେ ସେ କହିଲେ ''ଘରେ ଯାଇ ଶୁଣିଲି ମୋଚିକାମ ଏ ରାଜ୍ୟରେ ନିଷେଧ ହୋଇଛି । ଏ ଖବର ପାଇ ମୁଁ ବଡ଼ ବ୍ୟସ୍ତ । ବିଚଳିତ । ତୁମେ କ'ଣ କଲ, ସେଇଆ ଭାବୁଥିଲି ।''

ମୋଚିଟି ବିନା ସଙ୍କୋଚରେ ଅତି ଆନନ୍ଦରେ କହିଲା- ''ଘରୁ ବାହାରି ଶୁଣିଲି ଯେ, ମୋଚି କାମ ବନ୍ଦ୍ । ମୁଁ ମୋ ରାସ୍ତାରେ ଗଲି । ପାଣି କାଢ଼ିଲି । ଯାହା ପାଇଁ ପାଣି କାଢ଼ିଲି ସେ ପଇସା ଦେଲା । ସଂଧ୍ୟା ପୂର୍ବରୁ କାମ ଛାଡ଼ିଲି । ଯାହା ରୋଜଗାର ହେଲା, ସେଥିରେ ଖାଦ୍ୟ କିଣିଛି ।

ସାହା ଆବାସ୍ କହିଲେ, ମୋଚି କାମ ବନ୍ଦ ହେବା ଶୁଣି ମୁଁ ତ ବ୍ୟସ୍ତ । ଯଦି ରାଜା ପାଣି ବାହାର କରିବା ବନ୍ଦ କରିଦିଅନ୍ତି, ତୁମେ କାଲି କ'ଣ କରିବ ?

ମୋଚିଟି କହିଲା- ''ଆଜିଠୁ ବ୍ୟସ୍ତ ହେବାର କାରଣ କିଛି ନାହିଁ । ପାଣି କାଢ଼ିବା ବନ୍ଦ ହେଲେ, ଭଗବାନଙ୍କ ଆଶୀର୍ବାଦ ତ ଅଛି ।''

ସାହା ଘରକୁ ଯାଇ ପାଣି ବାହାର କରିବା ରାଜାଦେଶ ବଳରେ ନିଷେଧ କରିଦେଲେ । ସେଦିନ ସଂଧ୍ୟାକୁ ସାହା ଆବାସ୍ ପୁଣି ମୋଚିର କୁଡ଼ିଆକୁ ଆସିଲେ । ସେତେବେଳକୁ ମୋଚିଟି ବେଶ୍ ଆନନ୍ଦରେ ଖାଉଥିଲା । ତାହାର ଯେମିତି କିଛି ମନସ୍ତାପ ନାହିଁ । ଏହା ଜଣା ପଡୁଥିଲା ।

ସାହା ଆସି ଅଭିବାଦନ ଜଣାଇ ମୋଚି ପାଖରେ ବସିଲେ । ତାପରେ ତାକୁ ପଚାରିଲେ- ''ଆଜି କ'ଣ କଲ ?''

ମୋଚିଟି କହିଲା- ''ଆଜି କାଠ ଚିରି ରୋଜଗାର କଲି ।''

ସାହା ଆବାସ୍ ପଚାରିଲେ- ''କାଲି ଯଦି କାଠ ଚିରା ନିଷେଧ ହୁଏ ?''

ମୋଚିଟି କହିଲା, ''ଭଗବାନଙ୍କ ଆର୍ଶୀବାଦ ତ ଅଛି ।''

ସବୁଦିନ ଭଳି ଦୁଇଜଣ ଯାକ ଖାଇଲେ । ଖୁସି ଗପ କଲେ । ସାହା ଆବାସ କାଲି ପୁଣି ଆସିବେ ବୋଲି ପ୍ରତିଶ୍ରୁତି ଦେଇ ବିଦାୟ ନେଇ ଆସିଲେ ।

ପରଦିନ ସାହା ଆବାସଙ୍କ ଆଦେଶରେ ସବୁ କାଠ ଚିରାଳିଙ୍କୁ ସୈନ୍ୟ ବିଭାଗରେ ନିଆଗଲା । ମୋଚିଟିଏ ସୈନ୍ୟ ବାହିନୀରେ ନିଯୁକ୍ତି ପାଇଲା ।

ସେମାନଙ୍କୁ ଖଣ୍ଡାଟିଏ ଧରାଇ ଦେଇ ଉଆସ ଜଗିବା ପାଇଁ ପଠାଇ ଦିଆଗଲା । ସଂଧ୍ୟା ପୂର୍ବରୁ ସେମାନଙ୍କୁ ବିଦାୟ କରିଦିଆଗଲା ।

ସାହା ଆବାସ ସବୁ ଦିନ ପରି ସେଦିନ ବି ମୋଚି କୁଡ଼ିଆକୁ ଆସିଲେ । ସେଦିନ ବି ମୋଚିଟି ଆନନ୍ଦ ମନରେ ଖାଇବାକୁ ବସିଥିଲା । ସମ୍ମୁଖରେ ତାର ଖାଦ୍ୟ ବଢ଼ା ହୋଇଥିଲା ।

ସାହା ଆବାସ ଆସି ମୋଚି ପାଖରେ ବସିଲେ ପଚାରିଲେ- '' ଆଜି କ'ଣ ହେଲା ?''

ଲୋକଟି କହିଲା ''ରାଜା ଆଦେଶରେ ମୁଁ ସୈନ୍ୟ ବିଭାଗରେ ଚାକିରୀ କଲି । ସେମାନେ ମୋତେ ଖଣ୍ଡାଟି ଦେଇ ଉଆସ ଜଗିବା ପାଇଁ ପଠାଇ ଦେଲେ । ସଂଧ୍ୟା ସୁଦ୍ଧା ରୋଜଗାର କିଛି ହେଲା ନାହିଁ । ମୁଁ ଆସି ଖଣ୍ଡାର ବେଣ୍ଟଟି ବାହାର କଲି । ଗୋଟିଏ କାଠ ଖଣ୍ଡା କରି ସେଥିରେ ବେଣ୍ଟଟି ଲଗାଇଲି । ତାକୁ ଖଣ୍ଡା ଖୋଳରେ ରଖିଲି । ଖଣ୍ଡାର ପାତିକୁ ବନ୍ଧା ପକାଇ ଆଜିର ଖାଦ୍ୟ କିଣିଲି ।''

ସାହା ଆବାସ୍ ପଚାରିଲେ କାଲି ଯଦି ସବୁ ଖଣ୍ଡା ପରୀକ୍ଷା କରାଯାଏ ? ମୋଚିଟି କହିଲା- ''କାଲିକି ଭଗବାନ ଆର୍ଶୀବାଦ ବି ଅଛି ।'' ସବୁଦିନ ଭଳି ସାହା ଆବାସ୍ ଅଭିବାଦନ କରି ଚାଲିଗଲେ । ପରଦିନ ମୋଚିଟି ଯାଇ ତାର କାମରେ ଯୋଗ ଦେଲା । ରକ୍ଷକଙ୍କ ଦାୟିତ୍ୱରେ ଥିବା ଅଫିସର ମୋଚିକ

ଡକାଇଲେ । ତାକୁ କହିଲେ- ''ଜଣେ ବନ୍ଦୀକୁ ମୃତ୍ୟୁଦଣ୍ଡ ମିଳିଛି । ତୁମେ ତାର ଶିର ଛେଦନ କରିବ ।''

ମୋଚିଟି ଅନୁନୟ କରି କହିଲା- ''ମୁଁ ମୋ ଜୀବନରେ ମଣିଷ କେବେ ମାରିନାହିଁ । ତେଣୁ ଏହା ମୋ ପକ୍ଷରେ ଅସମ୍ଭବ ।''

ଅଫିସର କହିଲେ- ''ଏହା ରାଜାଦେଶ । ପାଳନ କରିବାକୁ ତୁମେ ବାଧ୍ୟ । ଯାହା କୁହାଗଲା ତାହା କର ।''

ମୋଚିଟି ବନ୍ଦୀ ପାଖକୁ ଗଲା । ବାଁ ହାତରେ ଖଣ୍ଡା ଖୋଳ ଓ ଡାହାଣ ହାତରେ ଖଣ୍ଡାର ବେଣ୍ଟ ଧରିଲା । ଉପସ୍ଥିତ ଲୋକଙ୍କ ଆଡ଼କୁ ଟିକିଏ ଅନାଇଲା ତାପରେ ଘୋଷଣା କଲା- ''ହେ ଭଗବାନ, ହେ ସ୍ୱର୍ଗର ଦେବତା, ମୁଁ ନରଘାତକ ନୁହେଁ ଏହା ଆପଣଙ୍କୁ ଜଣା । ବନ୍ଦୀର ଯଦି ମୃତ୍ୟୁ ଯୋଗ ଥାଏ, ମୋ ଖଣ୍ଡାଟି ଇସ୍ପାତ ହୋଇଯାଉ । ଯଦି ବନ୍ଦୀଟି ନିରୀହ, ମୋ ଖଣ୍ଡାଟି ଇସ୍ପାତ ବଦଳି କାଠ ହୋଇଯାଉ ।'' ଏତକ କହି ଖଣ୍ଡା ଖୋଳରୁ ସେ ଖଣ୍ଡାଟି ଟାଣିଆଣି ବାହାର କଲା । ଆଶ୍ଚର୍ଯ୍ୟ ଏ ଯେ ଇସ୍ପାତ ଖଣ୍ଡା ନୁହେଁ ! କାଠର ଖଣ୍ଡା । ଉପସ୍ଥିତ ଜନତା ଧୀରସ୍ଥିର ଭାବରେ ଏହା ଦେଖୁଥାନ୍ତି ।

ତା'ପରେ ସାହା ମୋଚିକୁ ଡକାଇଲେ । ତାକୁ କୁଣ୍ଢାଇ ପକାଇ ଚୁମ୍ବନ ଦେଲେ । ତାକୁ ନିଜର ପରାମର୍ଶ ଦାତା ହିସାବରେ ଗ୍ରହଣ କଲେ ।



# ପୃଥିବୀର ଲୋକକଥା

(୧) ଭିଏତ୍‌ନାମ (୨) ଲାଦାଖ-୧ (୩) ଲାଦାଖ-୨ (୪) ପଞ୍ଜାବ-୧ (୫) ପଞ୍ଜାବ-୨ (୬) ପଞ୍ଜାବ-୩ (୭) ପଞ୍ଜାବ-୪ (୮) ପଞ୍ଜାବ-୫ (୯) ଉତ୍ତର ପ୍ରଦେଶ -୧ (୧୦) ଉତ୍ତର ପ୍ରଦେଶ -୨ (୧୧) ପଞ୍ଜାବ-୬ (୧୨) ଉତ୍ତର ପ୍ରଦେଶ-୩ (୧୩) ପଞ୍ଜାବ-୭ (୧୪) ଉତ୍ତର ପ୍ରଦେଶ -୪ (୧୫) ମଧ୍ୟ ପ୍ରଦେଶ -୧ (୧୬) କାଶ୍ମୀର-୧ (୧୭) ଆସାମ-୧ (୧୮) କାଶ୍ମୀର -୨ (୧୯) କାଶ୍ମୀର-୩ (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧ (୨୨) ଆସାମ-୨ (୨୩) ଶ୍ରୀଲଙ୍କା-୧ (୨୪) ଋଷିଆ-୧ (୨୫) ଇହୁଦୀ-୨ (୨୬) ସାନ୍ତାଳ-୧ (୨୭) ଇଟାଲୀ-୧ (୨୮) ମଧ୍ୟପ୍ରଦେଶ-୨ (୨୯) ଶ୍ରୀଲଙ୍କା-୨ (୩୦) ସାନ୍ତାଳ-୨ (୩୧) ସାନ୍ତାଳ-୩ (୩୨) ସାନ୍ତାଳ-୪ (୩୩) ସାନ୍ତାଳ-୫ (୩୪) ସାନ୍ତାଳ-୬ (୩୫) ସାନ୍ତାଳ-୭ (୩୬) ନେପାଳ -୧ (୩୭) ହରିଆନା-୧ (୩୮) ସାନ୍ତାଳ-୮ (୩୯) ସାନ୍ତାଳ-୯ (୪୦) ସାନ୍ତାଳ-୧୦ (୪୧) ସାନ୍ତାଳ-୧୧ (୪୨) ସାନ୍ତାଳ-୧୨ (୪୩) ସାନ୍ତାଳ-୧୩ (୪୪) ସାନ୍ତାଳ-୧୪ (୪୫) କନ୍ଧ-୧ (୪୬) ନେପାଳ-୨ (୪୭) ତିବ୍ବତ-୧ (୪୮) ଇହୁଦୀ-୩ (୪୯) ଇହୁଦୀ-୪ (୫୦) ଜାପାନ-୧ (୫୧) ତାମିଲନାଡୁ-୧ (୫୨) ତାମିଲନାଡୁ-୨ (୫୩) ତାମିଲନାଡୁ-୩ (୫୪) ତିବ୍ବତ-୨ (୫୫) ଫିଲିପାଇନ୍-୧ (୫୬) ଫିଲିପାଇନ୍-୨ (୫୭) ଚୀନ୍-୧ (୫୮) ଫ୍ରାନ୍ସ-୧ (୫୯) ଫ୍ରାନ୍ସ-୨ (୬୦) ସ୍କଟଲ୍ୟାଣ୍ଡ-୧ (୬୧) ଇହୁଦୀ-୫ (୬୨) ହିମାଚଳ ପ୍ରଦେଶ-୨ (୬୩) ଆସାମ୍-୩ (୬୪) ହିମାଚଳ ପ୍ରଦେଶ-୩ (୬୫) ଶ୍ରୀଲଙ୍କା-୩ (୬୬) ମିଆଁମାର-୧ (୬୭) ମିଆଁମାର-୨ (୬୮) ଇରାନ୍-୧ (୬୯) ଚୀନ୍-୨ (୭୦) ମଧ୍ୟପ୍ରଦେଶ-୩ (୭୧) କେରଳ-୧ (୭୨) ଚୀନ୍-୩ (୭୩) ରାଜସ୍ଥାନ-୧ (୭୪) କେରଳ-୨ (୭୫) ରାଜସ୍ଥାନ-୨ (୭୬) ରାଜସ୍ଥାନ୍-୩ (୭୭) ମିଆଁମାର-୩ (୭୮) ହରିଆନା-୨ (୭୯) ମିଆଁମାର-୪ (୮୦) ସାଉଦି ଆରବ ଓ ଆଲଜେରିଆ (୮୧) ଚୀନ୍-୪ (୮୨) ଚୀନ୍-୫ (୮୩) ଚୀନ୍-୬, (୮୪) ଇରାକ୍-୧ (୮୫) ଭାରତ-୧ (୮୬) ଋଷିଆ-୨ (୮୭) ଋଷିଆ-୩ (୮୮) ଋଷିଆ-୪ (୮୯) ଇରାନ୍-୨ (୯୦) କନ୍ଧ-୨ (୯୧) କୋରିଆ-୧ (୯୨) କୋରିଆ-୨ (୯୩) ଇରାକ୍-୨ (୯୪) କନ୍ଧ-୩ (୯୫) କନ୍ଧ-୪ (୯୬) ଆସାମ୍-୪ (୯୭) ଇଣ୍ଡୋନେସିଆ-୧ (୯୮) ତେଲଗୁ ଦେଶ -୧ (୯୯) ଉତ୍ତର ଭାରତ-୧ (୧୦୦) ସିରିଆ-୧ (୧୦୧) ଜର୍ମାନ୍-୧ (୧୦୨) ଉତ୍ତର ଭାରତ-୨ (୧୦୩) ଜର୍ମାନ୍-୨ (୧୦୪) ଗ୍ରୀକ-୧ (୧୦୫) ଉତ୍ତର ଭାରତ-୩ (୧୦୬) ମରକୋ-୧ (୧୦୭) ଲୁସାଇ (୧୦୮) ଲାଖେର (୧୦୯) ପାଙ୍ଗି (୧୧୦) ମିକିର (୧୧୧) ଖାସି ଜୟନ୍ତିଆ (୧୧୨) କାଚାରୀ-୧ (୧୧୩) ଆସାମ୍-୫ (୧୧୪) ହିମାଚଳ ପ୍ରଦେଶ-୪ (୧୧୫) ହିମାଚଳ ପ୍ରଦେଶ-୫

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ, ପୋ: ଦାଘାଳ, ଜିଲ୍ଲା-ପୁରୀ
ସି.ଡି.ଏ. ସି-୩୨ (ସେକ୍ଟର-୭), କଟକ-୧୪